

ଡକ୍ଟର କୃତ୍ତିବାସ ନାୟକ
ଜନ୍ମ : ୦୨.୦୩.୧୯୫୫

- ଲେଖକ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭବରେ କଲମ ଚଳାଇ ସବୁ କ୍ଷେତ୍ରରେ ସଫଳତା ଲାଭ କରିଛନ୍ତି ।
- ଚାରିଖଣ୍ଡ ଗୀତି କବିତା ଯଥା : ଗୀତି ଶତକ, ପ୍ରୀତି ଶତକ, ପଲ୍ଲୀ ଗୀତ- ଉଡ଼ିଗଲେ ଗେଣ୍ଡାଳିଆ ଓ ଭକ୍ତି ଶତକ ପ୍ରକାଶିତ ।
- ଉପନ୍ୟାସ **ଶୁଭଲକ୍ଷ୍ମୀ**ର ହିନ୍ଦୀ ସଂସ୍କରଣ ଶ୍ରେଷ୍ଠ ଉପନ୍ୟାସ ଭାବେ ଜାତୀୟ ପୁରସ୍କାର ପ୍ରାପ୍ତ : (୨୦୦୨)
- **ବଣଭୋଜି** (୧୯୯୨) ଓ **ଫୁଲ ସବୁ ଫୁଟିଲେ** (୧୯୯୯) ପୁସ୍ତକଦ୍ୱୟ ଜାତୀୟ ଶ୍ରେଷ୍ଠ ଶିଶୁସାହିତ୍ୟ ପୁରସ୍କାର ପ୍ରାପ୍ତ ।
- ୨୦୦୪ ମସିହା ସୁଦ୍ଧା ତାଙ୍କର ୭୪ ଖଣ୍ଡ ପୁସ୍ତକ ପ୍ରକାଶିତ ।
- ସୂଚନା ସାହିତ୍ୟ କ୍ରମରେ କେନ୍ଦୁଝର ଦର୍ପଣ, ରାଉରକେଲା ଦର୍ପଣ, ଆଜିର କୋରାପୁଟ, ସମ୍ବଲପୁର ପ୍ରତିଭା, ଜ୍ଞାନ ସଂଗ୍ରହ ଓ ଉତ୍କଳ ଦର୍ପଣ ପ୍ରକାଶିତ ।
- ଗଳ୍ପ ସଂକଳନ : ଟିମା ଫକୀର, ସଦାନନ୍ଦ ବାବୁଙ୍କ ସଂସାର ଓ ଶୁଣିମା ହେଉ ପ୍ରକାଶିତ ।
- ସର୍ବଜ୍ଞ ମାନବ ଓ ପୃଥିବୀର ସୃଷ୍ଟି ରହସ୍ୟ ତଥ୍ୟ ସମ୍ବଳିତ ବିଜ୍ଞାନ ପୁସ୍ତକ ବେଶ୍ ଲୋକପ୍ରିୟତା ହାସଲ କରିଛି ।
- ସଂପ୍ରତି ଆକାଶବାଣୀର ଜଣେ ଭାରତୀୟ ପ୍ରସାରଣ ସେବା ଅଧିକାରୀ ଭାବେ କାର୍ଯ୍ୟରତ ।
- ଶିଶୁ ସାହିତ୍ୟରେ ଗବେଷଣା କରି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ କଳାଭୂଷଣ Ph.D ଉପାଧିରେ ଭୂଷିତ ।

# କୃଷିବୋଧୁ

ଡକ୍ଟର କୃତ୍ତିବାସ ନାୟକ

ଅରୁଣ - ତରୁଣ
ଯୋରନ୍ଦା, ଢେଙ୍କାନାଳ

ISBN NO. 81-87968-20-6

# କୁଳବୋହୂ

ମହିମା ଧର୍ମ ଉପରେ ଆଧାରିତ
ସାଂସ୍କୃତିକ ଉପନ୍ୟାସ


ରଚନା : ଡକ୍ଟର୍ କୃତ୍ତିବାସ ନାୟକ
(ଜାତୀୟ ପୁରସ୍କାର ପ୍ରାପ୍ତ ଲେଖକ)

ପ୍ରକାଶକ : ଅରୁଣ-ତରୁଣ,
ଯୋରନ୍ଦା, ଢେଙ୍କାନାଳ,
ଫୋନ୍ - 239063

ଅକ୍ଷର ସଜ୍ଜା : ଚନ୍ଦ୍ରଶେଖର ପ୍ରେସ୍, ଢେଙ୍କାନାଳ

ମୁଦ୍ରଣ : ଜଗନ୍ନାଥ ପ୍ରୋସେସ୍, କଟକ-2

ପ୍ରଥମ ସଂସ୍କରଣ : 2005

ମୂଲ୍ୟ : ପଚାଶ ଟଙ୍କା ମାତ୍ର


---

*Kulabohu* : **NOVEL**

Author : *Dr. Kruttibas Nayak*

# କୁଳବୋହୂ

## କୃତଜ୍ଞତା

**କୁଳବୋହୂ** ଉପନ୍ୟାସ ରଚନା, ପ୍ରକାଶନ ତଥା ସଂଶୋଧନ କ୍ଷେତ୍ରରେ ଯେଉଁମାନେ ଆନ୍ତରିକ ସହଯୋଗ କରିଛନ୍ତି, ସେମାନେ ହେଲେ :

ଶ୍ରୀ ପ୍ରଦୀପ୍ତ କୁମାର ଭଞ୍ଜ , ଶିକ୍ଷକ, ଶ୍ରୀମତ୍ ଅବିନାଶ ବାବା, ମହିମାଗାଦି, ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର, ଢେଙ୍କାନାଳ, ଅଧ୍ୟାପକ ଶଙ୍କର୍ଷଣ ଜେନା, ମହିମାଗାଦି କଲେଜ ଏବଂ ଚନ୍ଦ୍ରଶେଖର ପ୍ରେସ୍‌ର କର୍ମଚାରୀ ବୃନ୍ଦ । ଏମାନଙ୍କ ନିକଟରେ ଲେଖକ ଗଭୀର କୃତଜ୍ଞତା ଜଣାଉଛନ୍ତି ।

ଏହି ଉପନ୍ୟାସର ସ୍ଥାନ, କାଳ, ପାତ୍ର ଓ ପାତ୍ରୀଗୁଡ଼ିକ ସଂପୂର୍ଣ୍ଣ କାଳ୍ପନିକ । ଯଦି କୌଣସି କ୍ଷେତ୍ରରେ ନାମ, ଧାମ, ଚରିତ୍ର ଓ ବିଷୟ ବସ୍ତୁ ଏହି ଉପନ୍ୟାସ ସହିତ ମିଶିଯାଏ, ତେବେ ତାହା ସଂଯୋଗ ବସତଃ ଘଟିଛି ବୋଲି ଧରି ନେବାକୁ ହେବ । ସେଥିପାଇଁ ମୁଁ ଦୁଃଖ ପ୍ରକାଶ କରିବି ।

*- ବିନୀତ ଲେଖକ*




ଦେବଦତ୍ତର ବାହାଘରଟି ସୁରୁଖୁରୁରେ ଶେଷ ହୋଇଗଲା ।

ଜ୍ୟୋତିର ପୁଅ ବୋହୂ ବେଶ୍ ଆନନ୍ଦରେ ତାଂକ କର୍ମକ୍ଷେତ୍ରକୁ ଚାଲିଗଲେ । ବନ୍ଧୁ ବାନ୍ଧବମାନେ ଯିଏ ଯେମିତି ନିଜ ନିଜ ସୁବିଧାରେ ବିଦା ହୋଇ ଗଲେଣି ।

ଆଜିକାଲି କାହା ପାଖରେ ଏତେ ଫାଙ୍କା ସମୟ ଅଛି ଯେ, ଆଗ ଭଳି ବନ୍ଧୁ ଘରକୁ ଗଲେ, ଆଠ ପନ୍ଦର ଦିନ ରହିଯିବ ? ହଁ, ଆଗରେ ଗାଡ଼ି ଘୋଡ଼ାର ଅସୁବିଧା ଥିଲା । ଏବେ ତ ଗାଡ଼ି ଗାଁ' ଦାଣ୍ଡ ଦେଇ ଚାଲିଛି । ସମସ୍ତେ କହୁଛନ୍ତି, ମୋର ତେଣେ କାମ ଅଛି ।

କେବଳ ଦୁଇଜଣ ବୁଢ଼ୀ ଆଜିଯାଏ କେବେ କହି ନାହାନ୍ତି ଯେ , ଆମର ବି ଅନ୍ୟଆଡ଼େ କାମ ଅଛି । ସେମାନେ ଯେମିତି ଥିଲେ, ଏବେ ବି ସେମିତି ଅଛନ୍ତି ।

ଜ୍ୟୋତି ଆଖିରୁ ଦୁଇବୁନ୍ଦା ଆନନ୍ଦାଶ୍ରୁ ଗଡ଼ିଆସିଲା । ସତରେ ଦେବଦତ୍ତର ବାହାଘରଟକୁ ଭଗବାନ ହିଁ ସମ୍ଭାଳି ନେଇଗଲେ । କେତେ ଝନ୍ଝଟ, କେତେ ନିନ୍ଦା ଆଉ ଅପମାନଗୁଡ଼ାକ ସତେ ଯେମିତି ଭସା ବାଦଲ ଭଳି ଭାସି ଭାସି ଚାଲିଗଲା । ସେହି କଳା ବାଦଲ ଘୋଟି ରହିଥିବା ଅତୀତକୁ କିଏ କେମିତି ବା ଭୁଲି ପାରିବ ?

ତଥାପି ଦେବଦତ୍ତ କହି ଯାଇଛି, 'ବୋଉ ! ତୁ ଯୋଉଦିନ ଫୋନ୍ କରିବୁ ଘରକୁ ଆସିବା ପାଇଁ, ମୁଁ ତା' ପରଦିନ ଆସି ତୋ' ପାଖରେ ପହଞ୍ଚି ଯିବି । ରତ୍ନାକୁ ମୁଁ ସବୁ କଥା ବୁଝେଇ ଦେଇ ସାରିଛି । ତୁ ଯାହା କହିବୁ, ସେଇଆ ହବ । ଯଦି ତୁ କହିବୁ, ସେ ଚାକିରି ଛାଡ଼ିଦେଇ ଆସି ତୋ' ପାଖରେ ରହିବ । ତୁ ଜୀବନରେ ବହୁତ ଦୁଃଖ ସହି ସାରିଛୁ । ତତେ ଆଉ ମୁଁ ଦୁଃଖରେ ରଖେଇ ଦେବିନାହିଁ । ତୁ ଚାହିଁଲେ, ମୋ ପାଖରେ ଆସି ରହି ପାରିବୁ । ବାଙ୍ଗାଲୋରରେ ମୁଁ ଯେଉଁ ଫ୍ଲାଟ୍ ନେଇଛି, ସେଥିରେ ଦୁଇଟା ରୁମ୍ ଖାଲି ତାଲା ପଡ଼ିକି ରହିଛି । କିଛି ଅସୁବିଧା ନାହିଁ । ଚାକର ପିଲାଟି ବଡ଼ ବିଶ୍ୱସ୍ତ । ବଜାର ହାଟ ସିଏ

ସବୁ କରେ । ସେଠିକାର ଜଳବାୟୁ ବି ଭଲ। ତୋ'ର ଆଣ୍ଠୁଗଣ୍ଠି ବାତ ସେଠି ଆପେ ଆପେ ଭଲ ହେଇଯିବ। ଆମର ତ ନିଜର କାରଟିଏ ଅଛି, ତତେ ନେଇ ସାରା ବାଙ୍ଗାଲୋର ବୁଲେଇ ଆଣିବି।'

ଜ୍ୟୋତି ପୁଅର ସବୁ କଥା ଶୁଣିସାରି କହିଥିଲା, 'ନାଇଁରେ ବାପା! ମୁଁ ଏ' ସଂସାରକୁ ଛାଡ଼ି ସେଠିକି ମୋଟେ ଯାଇ ପାରିବି ନାହିଁ। ମୋ ଶାଶୂ ବୁଢ଼ୀ ଆଉ ବିଧବା ପିଉସୀ ଶାଶୂ ଦୁଇଜଣଙ୍କ ସାଙ୍ଗରେ ମୁଁ ଏଇଠି ବେଶ୍ ସୁଖରେ ରହିଛି, ଆଉ ରହିଥିବି। ଏତେ ପଇସା ଖର୍ଚ୍ଚ କରି ରତ୍ନା ଇଂଜିନିୟରିଂ ପଢ଼ିଛି। ତାକୁ ଆଣି ଆମେ କାହିଁକି ଏ' ଅପନ୍ତରାରେ ବସେଇ ରଖିବୁ ?

-ତୁ ଖାଲି ସପ୍ତାହକୁ ଥରେ ଲେଖା ଫୋନ୍ କରି ତୋ'ର ଆଉ ବୋହୂର ଦେହ ପା', ଭଲ ମନ୍ଦ କଥା କହି ଦେଉଥିବୁ । ସେଇ ସେତିକି ଆମ ପାଇଁ ଯଥେଷ୍ଟ। ତମେ ଦି' ଜଣ ସେଇଠି ଭଲରେ ରୁହ। ନାତି କି ନାତୁଣୀଟିଏ ହେଲେ, ତାକୁ ଆଣି ଆମ ପାଖରେ ଛାଡ଼ି ଦେଇଯିବ। ତାକୁ ଦେଖି ଆମେ ତିନିଜଣ ଏଇଠି ସୁଖରେ ବଞ୍ଚି ପାରିବୁ।

ଜ୍ୟୋତିର କଥା ଶୁଣି ଦେବଦତ୍ତ ଫେଁ କରି ହସି ପକାଇ କହିଥିଲା- 'ଗୋଟାଏ ଦେବଦତ୍ତକୁ ମଣିଷ କରିବା ପାଇଁ ତ ତୁ ଏତେ କଷ୍ଟ ସହିଲୁ। ଆହୁରି ତୋ' ମନ ଛାଡ଼ିନାହିଁ ? ପୁଣି ଥରେ ଆଉ ଗୋଟାଏ ଦେବଦତ୍ତ ଗଢ଼ିବାକୁ ଚାହୁଁଛୁ ?ହଉ, ରତ୍ନା ସେ ଦାୟିତ୍ୱ ନେଉ। ତୁ ଯାହା ଚାହିଁବୁ, ତାହା ହିଁ ହବ'।

ଗୋଟାଏ ଦୀର୍ଘଶ୍ୱାସ ପକେଇ ଜ୍ୟୋତି ଘର ଭିତରକୁ ଫେରିଗଲା। ଶାଶୂ ବୁଢ଼ୀକୁ ଆଉ ଭଲ ଦେଖା ଯାଉନାହିଁ କି ସେ ବେଶି ଚଲାବୁଲା କରିପାରୁ ନାହାନ୍ତି। ଦିନସାରା ସେହି ଠାକୁର ଘରେ ବସି ମାଳି ଗଡ଼ଉଥିବେ। ରାଧାକୃଷ୍ଣଙ୍କ ପିତ୍ତଳ ମୂର୍ତ୍ତି ଆଉ ଜଗନ୍ନାଥଙ୍କ ଫଟୋ ପୂଜାରେ ଦିନ ରାତି ଲାଗି ରହିଥିବେ।

- ଏଇ କେଇଟା ଦିନ ପାଇଁ ସିଏ ଯେମିତି ନବ ଜୀବନ ପାଇଥିଲେ। ଦେବଦତ୍ତର ବାହାଘର ପାଇଁ ତାଂକର ସବୁ ରୁଟିନ୍ ବନ୍ଧା କାମରେ ଗୋଳମାଳ ହେଇ ଯାଇଥିଲା। ଚଳଚଞ୍ଚଳ ହେଇ ପଡ଼ିଥିଲେ।

ସେ କେତେଥର କହି ସାରିଲେଣି, ଦେବଦତ୍ତର ବାହାଘର ହଉଛି, ତାଂକର ଶେଷ କାମ। ଆଉ ଅଣନାତି କି ଅଣ ନାତୁଣୀଟିକୁ ଦେଖିବା ହେଉଛି, ତାଂକର ଶେଷ ଇଛା। ପୁଅ-ବୋହୂ ବିଦା ହେଇଗଲା ପରେ ପୁଣି ତାଂକର ରୁଟିନ୍ ବନ୍ଧା ପୂଜା-ଓଷା ବ୍ରତରେ ସେ ଲାଗି ପଡ଼ିଲେଣି । ତ୍ୟାଗର ମୂର୍ତ୍ତିମନ୍ତ ଏଇ ଶାଶୂମା'ଙ୍କୁ ଜ୍ୟୋତି ତିନୋଟି ରୂପରେ ଦେଖି ସାରିଛି ।

ଜ୍ୟୋତି ଯେତେବେଳେ ପ୍ରଥମ କରି ବୋହୂ ହୋଇ ତାଂକ ଘରେ ପାଦ ଦେଇଥିଲା । ସେତେବେଳକୁ ଶାଶୂମା'ଙ୍କର ବଳିଷ୍ଠ ଗୋରା ଚେ଼ହେରା, ଡ଼ିମା ଡ଼ିମା ଆଖି ଆଉ କୁଞ୍ଚୁ କୁଞ୍ଚିଆ କଳା ମଚ଼ମଚ଼ କେଶ ରାଶି ଥିଲା । ତାଂକ କଥାରେ ଭରି ରହିଥିଲା, ସ୍ନେହାସିକ୍ତ ମମତାଭରା ମଧୁର ଭାଷା । ସବାରି ଭିତରୁ ଥାଇ ସେ ଶୁଣିଥିଲା- 'ମୋ' ବୋହୂ ତ ଛୁଆଟା । ଏବେ ତା'ର ଖେଳାବୁଲା କରିବାର ବୟସ । ସିଏ କ'ଣ ଜାଣିଛି ଯେ, ତାକୁ ଗୁଡ଼ ତାଟିଆ, ହଳଦି ତାଟିଆ କଥା କହୁଛ ?

-ଛାଡ଼ ଛାଡ଼, ମୋ ଘରର ଲକ୍ଷ୍ମୀ ଆଗ ଘର ଭିତରକୁ ଆସୁ' ।

ଜ୍ୟୋତିର ବାହାଘର ବେଳକୁ ତାକୁ ଅଠର ଚ଼ାଲିଥିଲା । ବାପା ମାଆଙ୍କର ଏକମାତ୍ର ଅଲିଅଳ ଝିଅ । ପୁଅଟିଏ ପାଇଁ ବାପା ସନାତନ ଅନେକ ତୀର୍ଥବ୍ରତ କରିଥିଲେ । ମାଆ ବି କେତେ ବାବାମାନଂକ ଶରଣ ପଶିଲେ । ଓଷାବ୍ରତ କରି ଆଇଁଷ ଛାଡ଼ିଲେ । ଯିଏ ଯାହା ଔଷଧ, ଗୁଣି ଟୁଣି ବତେଇଲେ । ସବୁ ହେଲା, କିନ୍ତୁ ସନାତନଙ୍କ କୋଳକୁ ଆଉ ଦ୍ୱିତୀୟ ସନ୍ତାନ ଆସିଲା ନାହିଁ । ବେଳେ ବେଳେ ସନାତନ ଗୁମ୍‌ମାରି ବସି ରହନ୍ତି । କେତେ କ'ଣ ତାଙ୍କ ମୁଣ୍ଡରେ ଡୁକେ ।

- ଜଗା ସାଆନ୍ତଙ୍କ କଥା ଗୁଡ଼ାକ କାନମୁଣ୍ଡାକୁ ଭାଁ ଭାଁ କରି ଦିଏ । ସେ କଥାଗୁଡ଼ାକ କ'ଣ ଭୁଲି ହଉଛି ?

'ସତ କଥା, ମୁଁ ହେଲି କୁଳବୁଡ଼ା ସନାତନ । କାରଣ ପୁଅଟିଏ ନାହିଁ, ମାନେ ମୁଁ ମୋ ବାପା ଗୋସାପାଙ୍କ ବଂଶକୁ ଏଇଠି ବୁଡ଼େଇ ଦେଇ ଯାଉଛି । ଝିଅ ଜନ୍ମ ତ ପରଘରକୁ । ବାହାଘର ଦିନଠୁଁ ସେ ଅନ୍ୟ ଗୋତ୍ରକୁ ଚ଼ାଲିଯିବ । ଏତେ ଧନ ସଂପତ୍ତି, ଜମି ବାଡ଼ି, ଘର-ଦ୍ୱାର ସବୁ ହବ କ'ଣ ? ପର ଖାଇଯିବେ । ଚ଼ୋର ଖଣ୍ଟ ଖାଇବା ଯାହା, ଭାଇ ଭଗାରି ଖାଇଯିବା ସେଇୟା । ପ୍ରଭୁଙ୍କ କୃପା ହେଲେ, ମୋ କୋଳ ଭରିଯିବ । ଛୋଟା, କଣା ହଉ ପଛେ ପୁଅଟିଏ ଥିଲେ, ମୋ ବଂଶଟା ରହିଯିବ । ଆମର, ଯେତିକି ସଂପତ୍ତି ଅଛି, ତାକୁ ବସି ଖାଇଲେ ବି ତା'ର ତିନି ପୁରୁଷ ଚ଼ାଲିଯିବ ।"

ଏମିତି ଭାବନାର ଖିଅ ଛିଡ଼ିଯାଏ ।

- ପୁଣି ବଳିଆ ମଉସା କଥା ମନେ ପଡ଼ିଯାଏ । 'ତାଂକର କ'ଣ ନହେଲା? ଛଅ ଛଅଟା ପୁଅଙ୍କୁ ସେ ଜନ୍ମ ଦେଇଥିଲେ । ଆଗରୁ ତିନିଟା ମରିଥିଲେ । ବାକି ତିନିଟା ହେଲେ ଅକାଳ କୁଷ୍ମାଣ୍ଡ । ବଡ଼ଟା ତା' ସ୍ତ୍ରୀ କଥାରେ ପଡ଼ି ମାଆକୁ ବାଡ଼େଇଲା । ବାପ ତାକୁ ତେଜ୍ୟପୁତ୍ର କରି ଦେଇଛି । ବାପ ସଂପତ୍ତିରେ ତା'ର ଅଣାକର ଅଧିକାର ନାହିଁ ।

- ଆଉ ଗୋଟାଏ ପୁଅ ଗୁଣ୍ଡା ଗର୍ଦ୍ଦି କରି ଜେଲରେ ପଶିଛି । ସବାସାନ ପୁଅଟା

ଉପରେ ବୁଢ଼ା ଭରସା କରିଥିଲା । ଏବେ ସେ କ'ଣ ହରିଜନ ସାହିରୁ ଝିଅଟାକୁ ନେଇ କୁଆଡ଼େ ପଳେଇଛି ଯେ, ତା'ର ପତ୍ତା ନାହିଁ । ଗାଆଁ ଲୋକ କହୁଛନ୍ତି - 'ତାକୁ ଏ'ଗାଆଁରେ ଆଉ ପୂରେଇ ଦେବେ ନାହିଁ'।

ଏବେ ବୁଢ଼ା ବୁଢ଼ୀ ଦି'ଟାଙ୍କର ଦୁଃଖ କହିଲେ ନସରେ । ତୁଣ୍ଡରେ ଗଂଗାଜଳ ଟୋପାଏ ଦେବାକୁ କେହି ନାହାନ୍ତି । ବୁଢ଼ା କହି ବୁଲୁଛି - 'ଏମିତିକା କୁଳାଙ୍ଗାର ପୁଅକୁ ଜନ୍ମ କରିବା ଅପେକ୍ଷା, କୁଳ ବୁଡ଼ିଯିବା ଶତେ ଗୁଣ ଭଲ '।

ଏଣେ ବୁଢ଼ୀଟା ଦିନରାତି ନିଜ ଭାଗ୍ୟକୁ ନିନ୍ଦି ମୁଣ୍ଡ କୋଡ଼ି ହଉଛି । ବେଳେ ବେଳେ ଅସରାଏ ଲେଖା ଅଭିଶାପ ପୁଅମାନଙ୍କ ଉପରେ ଢ଼ାଳୁଛି ।

ଗାଁ' ଯାକର ଲୋକଙ୍କ କଥା, ଜଣଜଣ କରି ଭାବିଲା ବେଳକୁ ତାଂକର ମୁଣ୍ଡ ଗୋଳମାଳ ହେଇଯାଏ । ସେଦିନ କେଉଁ ଏକ ଶୁଭ ମୁହୂର୍ତ୍ତରେ ଭିକ୍ଷାପ୍ରାର୍ଥୀ ମଧୁବାବାଙ୍କ ସହିତ ସନାତନଙ୍କର ଭେଟ ହେଇଥିଲା । କହୁ କହୁ ସେ ବାବାଙ୍କୁ ସବୁ ମନ କଥା ଖୋଲି କହି ପକାଇଲେ । ବାବା ଜଣକ ଶୂନ୍ୟକୁ ଚ଼ାହିଁ ଉଚ୍ଚ ସ୍ୱରରେ 'ଗୁରୁ ମହିମା ଅଲେଖ' ବୋଲି ଚ଼ିତ୍କାର କରି ତାଂକୁ ଆଶ୍ୱାସନା ବାଣୀ ଶୁଣାଇଲେ - 'ତୁମର ନିଶ୍ଚୟ ପୁତ୍ରଟିଏ ଲାଭ ହେବ ।' ଏଥିପାଇଁ ଦରକାର ସମର୍ପଣ ଭାବ, ଗଭୀର ବିଶ୍ୱାସ, କଠୋର ସାଧନା ଆଉ ନିଷ୍ଠାର ସହିତ ସାଧୁ ସନ୍ଥଙ୍କର ସେବା ।'

ପୁଅଟିଏ ପାଇଁ ବ୍ୟାକୁଳ ହେଉଥିବା ସନାତନଂକୁ ବାବାଂକ ଆଶ୍ୱାସନା ବାଣୀ, ଘନ ଅନ୍ଧକାର ଭିତରେ ସତେ ଯେପରି ବିଜୁଳି ଆଲୋକ ପରି ଦୃଶ୍ୟମାନ ହେଲା । ସେ ବାବାଂକୁ ନିମନ୍ତ୍ରଣ କରି ଅନେକ ଥର ଏ' ବିଷୟରେ ଆଲୋଚ଼ନା କଲେ । ମନ ପୂରାଇ ଭିକ୍ଷା ଦେଲେ । ବିଶ୍ୱାସ ତାଂକର ଦୃଢ଼ରୁ ଦୃଢ଼ତର ହେବାକୁ ଲାଗିଲା ।

ପତି ପତ୍ନୀ ଦୁହେଁ ଅନାଗତ ଭବିଷ୍ୟତକୁ ଅପେକ୍ଷା କରି କଠୋର ସାଧନା ଓ ସାଧୁ ସନ୍ଥଂକ ସେବାରେ ମନ ବଳାଇଲେ । ବାବାଂକ ପରାମର୍ଶ କ୍ରମେ ତାଂକର ଗୁରୁ ନିରାକାର ବାବାଙ୍କ ମଠକୁ ଯାଇ ତାଂକଠାରୁ ସେମାନେ ଗୃହସ୍ଥ ଭାବରେ ଦୀକ୍ଷା ଗ୍ରହଣ କଲେ । ଏଣିକି ସନାତନ ନିୟମିତ ବାବାଂକ ମଠକୁ ଯାଇ ଗୁରୁଂକ ସେବା ଯତ୍ନରେ ମନ-ଧ୍ୟାନ ଦେଲେ । ମଝିରେ ମଝିରେ ପତ୍ନୀ ଓ ଶିଶୁ କନ୍ୟାକୁ ସାଥୀରେ ନେଇ ଗୁରୁଂକ ସେବାରେ ନିୟୋଜିତ ହେଲେ ।

ଶୁଭଦିନ ଦେଖି ଗୁରୁ ତାଂକ ଶିଶୁ କନ୍ୟାର ନୂତନ ନାମ କରଣ କରାଇ ଜ୍ୟୋତି ରଖିଥିଲେ । ସେଦିନ ତା'ର କୋଷ୍ଠି ଦେଖି ସେ କହିଥିଲେ - 'ଏହି କନ୍ୟାଟି ସର୍ବଦା ଜ୍ୟୋତିଷ୍କ ସଦୃଶ ଆଲୋକ ବିତରଣ କରିବ । ଶତ ପୁତ୍ରର ଶକ୍ତି ଓ ସାହସ

ନେଇ ତୁମ ବଂଶର ଜ୍ୟୋତିକୁ ଉଜାଗର କରି ରଖିବ । କନ୍ୟାଟି ଏକ ଅସାଧାରଣ ମହିଳାରେ ପରିଣତ ହେବ । ତା'ଠାରୁ ଏକ ଦେବଶିଶୁ ଜନ୍ମ ଲାଭ କରିବ' ।

ଦୀକ୍ଷା ଦାତା ପରମ ପୂଜ୍ୟ ଗୁରୁ ନିରାକାର ବାବାଂକଠାରୁ ଶିଶୁକନ୍ୟାର ଭବିଷ୍ୟତ ବାଣୀ ଶୁଣି ସନାତନ ସେଦିନ ଆତ୍ମ ବିଭୋର ହୋଇ ପଡ଼ିଥିଲେ । ସେ ଖୋଲା ମନରେ ଉପସ୍ଥିତ ଶିଷ୍ୟମାନଂକୁ ଜଣେଇ ଦେଲେ, 'ମୁଁ ବାବାଂକ ଶ୍ରୀ ଚରଣରେ ନିଜକୁ ସମର୍ପିତ କରି ଦେଇଛି । ସିଏ ଯାହା କରିବେ, ଯାହା କହିବେ-ତାହା ହେବ, ମୋ ପାଇଁ ବେଦବାକ୍ୟ । ତାଂକର ସେବା ପୂଜା କରିବା ମୋର ଧର୍ମ । ତାଂକ ଆଜ୍ଞାରେ ଯଦି ମୋ କନ୍ୟାର ଦେବଶିଶୁଟିଏ ଜନ୍ମଲାଭ ହେବାର ଥାଏ, ତେବେ ମୋର ନିଜର ପୁତ୍ର ସନ୍ତାନ ନହେଲେ ବି ଦୁଃଖନାହିଁ । ମୁଁ ଚାହେଁ, ମୋ ବଂଶଟା ବୁଡ଼ି ନଯାଉ । ଝିଅ ତ ଦୁହିତା । ସେ ଦୁଇ କୁଳକୁ ହିତା । ତା'ର ପୁଅଟି ହେଲେ, ମୋର ଏ'ସବୁ ସମ୍ପତ୍ତି ହେବ କ'ଣ ? ତା' ନାଆଁରେ ସବୁ ଲେଖେଇ ଦେବି' ।

ନିରାକାର ବାବାଂକଠାରୁ ଝିଅର ଉଜ୍ଜଳ ଭବିଷ୍ୟତ କଥା ଶୁଣି ସନାତନଙ୍କ ମନ ନାଚି ଉଠିଲା । ନିଜର ପୁଅଟିଏ ହେଉ ବା ନହେଉ, ସେଥିପ୍ରତି ଆଉ ତାଂକର ଅଭାବ ବୋଧ ରହିଲା ନାହିଁ । ମଧୁବାବାଂକ କଥାକୁ ସେ ଅକ୍ଷରେ ଅକ୍ଷରେ ପାଳନ କରିବାରେ ଲାଗିଲେ । ଗୁରୁଂକ ନିକଟରେ ସେ ନିଜକୁ ସଂପୂର୍ଣ୍ଣ ଭାବରେ ସମର୍ପି ଦେଲେ । ନିରାକାର ବାବାଂକ ସେବା ପୂଜାରେ ସେ ଅତ୍ୟନ୍ତ ନିଷ୍ଠାପର ହୋଇ ଉଠିଲେ । ବାବାଂକର ପ୍ରତ୍ୟେକ ବ୍ୟକ୍ତିଗତ କାମରେ ସେ ନିଜକୁ ଜଣେ ସହାୟକ ହିସାବରେ ନିୟୋଜିତ କରିଦେଲେ । ନିଜ ଘରକାମ, ଚାଷକାମ ଏବଂ ପରିବାରର ଯତ୍ନ ଅପେକ୍ଷା ସେ ବାବାଂକ କାମକୁ ଅଧିକ ଗୁରୁତ୍ୱ ଦେଇ ଚାଲିଲେ । ଧର୍ମଚର୍ଚ୍ଚା, ଭଜନ, କୀର୍ତ୍ତନ ଏବଂ ମଠର ସୁରକ୍ଷା ଓ ଭକ୍ତମାନଙ୍କର ଚର୍ଚ୍ଚାରେ ତାଂକର ଅଧିକ ସମୟ ବିତିଲା ।

ଚାହୁଁ ଚାହୁଁ ଜ୍ୟୋତିକୁ ସତର ପୂରି ଅଠର ଚାଲିଲା । ଅତି ଛୋଟବେଳେ ସେ ବାପା-ମା'ଙ୍କ କୋଳରେ କାଖ ହେଇ ମଠକୁ ଆସୁଥିଲା । ପ୍ରଥମେ ପ୍ରଥମେ ସେ ମଠରେ ଥିବା ବାବାମାନଙ୍କର ଅର୍ଦ୍ଧଲଗ୍ନ ଗେରୁଆ ବସ୍ତ୍ର ପରିଧାନକୁ ଦେଖି ଭୟ କରୁଥିଲା । ଧୀରେ ଧୀରେ ସେ ଅଭ୍ୟସ୍ତ ହୋଇଗଲା । ମଠରେ ଥିବା ଶିଷ୍ୟମାନେ ଜ୍ୟୋତିକୁ ବହୁତ ଭଲ ପାଆନ୍ତି । ଗେଲ କରି ଦିଅନ୍ତି । ଚତୁର୍ଥ ଓ ପଞ୍ଚମରେ ପଢୁଥିବା କୁନିଝିଅ ଜ୍ୟୋତି ବାପା ମାଆଙ୍କର ସାଂଗରେ ଆସି ମଠରେ ଥିବା ଫୁଲଗଛରେ ପାଣି ଦେଇ ପକାଏ । ବାବାଂକ ଲେଙ୍ଗୁଟି ଶୁଖି ଯାଇଥିଲେ, ତୋଳି ଆଣି ମଠରେ ଠିକ୍ ଜାଗାରେ ରଖିଦିଏ ।

ବୟସ ବଢ଼ିବା ସଙ୍ଗେ ସଙ୍ଗେ ଜ୍ୟୋତିର ଶରୀରରୁ ଜ୍ୟୋତି ପ୍ରକାଶ ହେଲା । ମଠରେ ତା'ର ଅବାଧ ପ୍ରବେଶ , ସତେ ଯେମିତି ପ୍ରତ୍ୟେକ ଗୋଡ଼ି-ମାଟି, ଗଛ-ଲତା ସହିତ ଜ୍ୟୋତିର ଘନିଷ୍ଠ ସଂପର୍କ ହୋଇଥିଲା । ମଠକୁ ଆସୁଥିବା ଭକ୍ତ ଓ ଅତିଥିମାନଙ୍କର ଚର୍ଚ୍ଚାରେ ତା'ର ଅଖଣ୍ଡ ଅଧିକାର।  ସେ ନ ଆସିଲେ, ଲାଗୁଥିଲା - ତା' ବିନା ସତେ ଯେମିତି ମଠ ଅଚଳ ହୋଇଯିବ। ନିରାକାର ବାବା ଭକ୍ତମାନଙ୍କୁ ଚିହ୍ନାଇ ଦେଇ କହି ପକାନ୍ତି - 'ଇଏ ହେଉଛି,  ମୋ ମଠର ଜ୍ୟୋତି । ତା' ଆଲୋକରେ ଆମେସବୁ ଆଲୋକିତ ହେଉଛୁ' ।

ଏହା ଭିତରେ ଜ୍ୟୋତିର ସ୍କୁଲ ପଢ଼ା ଶେଷ ହେଇ ଯାଇଥାଏ। ବାବା ତାକୁ ଭବିଷ୍ୟତ ବାଣୀ ଶୁଣାଇଥିଲେ, ସେ ନିଶ୍ଚୟ ଫାଷ୍ଟ୍ ଡ଼ିଭିଜନ୍‌ରେ ପାସ୍ କରିବ । ବାବାଂକ କଥା ସତ ହେଇଥିଲା। ଏବେ ସେ କଲେଜର ସ୍ନାତକ ବିଜ୍ଞାନ ଛାତ୍ରୀ। ବିଜ୍ଞାନ ପ୍ରତି ତା'ର ଭାରି ଆଗ୍ରହ । ଏଣେ ଆଧ୍ୟାତ୍ମିକ ଭାବନା ଓ ମହିମା ଧର୍ମର ଗୁଢ଼ତତ୍ତ୍ୱ ସଂପର୍କରେ ସେ ଯଥେଷ୍ଟ ଜ୍ଞାନ ଅର୍ଜନ କରି ସାରିଲାଣି । ମଝିରେ ମଝିରେ ଭକ୍ତମାନଙ୍କୁ ଅଲେଖ-ମହିମାଙ୍କର ଶୂନ୍ୟବାଦ ଉପରେ ବେଶ୍ ଯୁକ୍ତି ସମ୍ମତ ସୂଚନା ଦେଇ ପାରୁଛି ।

ଏହି ଧର୍ମରେ କିଭଳି ବିଜ୍ଞାନ ସମ୍ମତ ଚିନ୍ତାଧାରା ସନ୍ନିବେଶିତ ହୋଇଛି, ତାକୁ ଅନୁସଂଧାନ କରିବାରେ ଜ୍ୟୋତି ବ୍ୟଗ୍ର। କଲେଜର ବକ୍ତୃତା ପ୍ରତିଯୋଗିତାରେ ସିଏ ସବୁବେଳେ ପ୍ରଥମ। ନିରାକାର ବାବା ଅନେକ ସମୟରେ ଜ୍ୟୋତିର ମୁଖ ମଣ୍ଡଳକୁ ଚାହିଁ ରହନ୍ତି । ମନେ ମନେ ଆଶୀର୍ବାଦ କରନ୍ତି । ତା'ର ଭାଗ୍ୟ ଭବିଷ୍ୟତକୁ ନେଇ କେତେ କ'ଣ ଭାବି ଚାଲନ୍ତି । ତା'ର କାର୍ଯ୍ୟକଳାପ, କଥାବାର୍ତ୍ତା, ଶୃଙ୍ଖଳା ଜ୍ଞାନ ଓ ଢଂଗ-ରଂଗ ସବୁ କିଛି ଦେଖି ଆଶ୍ଚର୍ଯ୍ୟ ହୁଅନ୍ତି ।

ଜ୍ୟୋତିକୁ ଏକୁଟିଆ ଆସି ମଠର ସେବାକାମ କରି ଚାଲି ଯିବାରେ କୌଣସି ପ୍ରକାର ଅସୁବିଧା ହୁଏନାହିଁ ।

ବାବାଂକଠାରୁ ସନାତନ ନିଜ ଝିଅର ପ୍ରଶଂସା ଶୁଣି ଆଖି ବୁଜି ଭଗବାନଙ୍କ ନିକଟରେ କୃତଜ୍ଞତା ଜଣାଏ । ମଝିରେ ମଝିରେ ତା' ମନରେ ବାବାଂକ ଭବିଷ୍ୟତ ବାଣୀ ପ୍ରତିଧ୍ୱନିତ ହୋଇଉଠେ। 'ଜ୍ୟୋତି କୋଳରେ ଏକ ଅସାଧାରଣ ଦେବଶିଶୁ ଜନ୍ମ ଲାଭ କରିବ'।

ଦୁଇ କୁଳ ପାଇଁ ଆମ ଜ୍ୟୋତି, ଜ୍ୟୋତି ସଦୃଶ ଆଲୋକ ବିତରଣ କରିବ'।






ସେ ଦିନ ମାଛି ଅନ୍ଧାର ହେଲାଣି । ମଠରେ ବେଶ୍ ଭିଡ଼ ଜମିଛି । ସନାତନ ତରବର ହୋଇ ମଠ ଭିତରକୁ ପଶି ଆସିଲେ । ଗୁରୁଙ୍କ ଶ୍ରୀଚରଣ ବନ୍ଦନା କରି ସାଷ୍ଟାଙ୍ଗ ପ୍ରଣାମ କଲେ । ନିରାକାର ବାବା ହାତଟେକି 'ଗୁରୁ ମହିମା ଅଲେଖ' କହି ଆଶୀର୍ବାଦ କଲେ । ଭକ୍ତମାନଂକ ସହିତ ଅନ୍ୟ ବାବାମାନେ ପ୍ରଭୁ ମହିମା ଗୋସେଇଁଙ୍କ ନାମ ଧରି ହାତ ଟେକି ଦେଲେ ।

ଅଖଣ୍ଡ ଧୂନିରେ ଘିଅ ଢ଼ାଳିଦେଇ ସନାତନ ନିରାକାର ବାବାଂକ ମୁଖକୁ ଏକ ଭିନ୍ନ ଦୃଷ୍ଟିରେ ଚ଼ାହିଁ ରହିଲେ । ଗୁରୁ ଠିକ୍ ବୁଝିଗଲେ, ସନାତନ କିଛି କହିବାକୁ ଚ଼ାହୁଁଛି । ମନଟା ତା'ର ଚ଼ଞ୍ଚଳ ଥିଲା ପରି ଜଣା ପଡୁଛି ।

ବାବା ମୁହୂର୍ତ୍ତକ ପାଇଁ ଆଖିବୁଜି ପ୍ରଭୁଙ୍କୁ ସ୍ମରଣ କରି କହିଲେ - 'କୁହ ବାପା ! ସନାତନ ! ତମର ମନଟା ଆଜି ଚ଼ଞ୍ଚଳ ହୋଇ ଉଠିଛି କାହିଁକି ? କ'ଣ କିଛି ଅଘଟଣ ଘଟିଛି କି' ?

ମଠରେ ଉପସ୍ଥିତ ଭକ୍ତ ଓ ସାଧୁମାନେ ସନାତନଙ୍କ ମୁହଁକୁ ଏକ ଲୟରେ ଚ଼ାହିଁ ରହିଥା'ନ୍ତି ।

ହାତଯୋଡ଼ି ସନାତନ କହିଲେ, 'ବାବା ! ଆଜି ଜ୍ୟୋତିର ବାହାଘର ପାଇଁ ପ୍ରସ୍ତାବଟିଏ ଆସିଛି । ଆପଣଙ୍କ ଅନୁମତି ନେଇ ନଥିବାରୁ ମୁଁ ସେମାନଙ୍କୁ ହଁ କି ନା' କିଛି କହି ପାରିନାହିଁ । ଆପଣ ଯାହା ଆଜ୍ଞା ଦେବେ - ତାହା ହିଁ ହେବ' ।

ବାବା ଖୋଲା ମନରେ ହୋ-ହୋ ହୋଇ ହସି ଉଠିଲେ । ଅନ୍ୟମାନେ ବାବାଂକ ହସର ଠିକ୍ ଉଦ୍ଦେଶ୍ୟକୁ ଜାଣି ପାରି ନଥିଲେ । ସନାତନ ବଲବଲ କରି ବାବାଂକୁ ଚ଼ାହିଁ ରହିଥା'ନ୍ତି ।

ବାବା କହିଲେ - 'କିରେ ବାୟା ! ଜ୍ୟୋତିକୁ ତ ଏବେ ମାତ୍ର ସତର କି ଅଠର ଚାଲିଛି । ଛୁଆଟା ଘର ସଂସାର କ'ଣ ଜାଣିଛି ଯେ, ଏବେ ତା' ବାହାଘର କଥା ଚିନ୍ତା କରୁଛୁ ? ମୁଁ କହୁଥିଲି ନା' ସେ ଏକ ଅସାଧାରଣ ନାରୀ ହେବ। ତୁ କ'ଣ ଦେଖି ପାରୁନୁ, ପାଠପଢ଼ା ସାଥେ ସାଥେ ସେ କେମିତି ମହିମା ଧର୍ମ ବିଷୟରେ ଗବେଷଣା କରି ଚାଲିଛି ? ଆଉ କେତେ ଦିନ ପରେ ସିଏ ତ ଆମମାନଂକୁ ପାଠ ପଢ଼େଇବରେ ସନାତନ ! ସେ ତା'ର ଜ୍ୟୋତି ନାମକୁ ହିଁ ସାର୍ଥକ କରିବ । ତାକୁ ଉଚ୍ଚ ଶିକ୍ଷିତା ଆଦର୍ଶ ନାରୀଟିଏ କରି ଗଢ଼ି ତୋଳିବା, ଆମ ସମସ୍ତଙ୍କର କର୍ତ୍ତବ୍ୟ ହେଉ' ।

ସମସ୍ତଙ୍କ ନୀରବତା ଭଂଗ କରି ମଧୁବାବା ଧୀର କଣ୍ଠରେ କହିଲେ, 'ବାବା! ଜ୍ୟୋତିର ଯଦି ବିବାହ ରାଶି ଖୋଲି ଯାଇଥାଏ, ତାକୁ କ'ଣ ଆମେ ଅଟକାଇ ପାରିବା ? ତା'ର କୋଷ୍ଠି ତ ଆପଣଂକ ପାଖରେ ଅଛି, ଟିକେ ଗଣନା କରିଦେଲେ, ସନାତନର ମନ ସନ୍ତୋଷ ହେଇ ଯାଆନ୍ତା' ।

ବାବା ସନାତନର ମୁହଁକୁ ଚାହିଁଲେ । ସେ ଜଣେ ଭବିଷ୍ୟତ ଦ୍ରଷ୍ଟା । ଜାତକ ତିଆରି କରିବା ଏବଂ କୋଷ୍ଠି ଗଣନାରେ ତାଂକର ସାମାନ୍ୟତମ ତ୍ରୁଟି କେହି କେବେ ଦେଖି ନାହାନ୍ତି । କିଂତୁ ଏ'କଥା ସତ ଯେ, ତାଂକଠାରୁ କାମ ଆଦାୟ କରିବା ବଡ଼କଷ୍ଟ ସାଧ୍ୟ କାର୍ଯ୍ୟ। ପାଞ୍ଚଥର, ସାତଥର ଅନୁରୋଧ କଲେ ହିଁ, ସେ ଗଣନା କାମ କରିଥା'ନ୍ତି । ଏଥିପାଇଁ ସେ କୌଣସି ପ୍ରକାର ଅର୍ଥ ବା ଭିକ୍ଷା ଗ୍ରହଣ କରନ୍ତି ନାହିଁ ।

ଆଜିର ଘଟଣା କିନ୍ତୁ ଭିନ୍ନ। ମଠର ଜ୍ୟୋତି, ପୁଣି ପ୍ରତ୍ୟେକ ସାଧୁଙ୍କର ସ୍ନେହାଷ୍ପଦ ଜ୍ୟୋତିର ବାହାଘର ପାଇଁ କୋଷ୍ଠି ଗଣନା କରାଯିବ। ତେଣୁ ଅନ୍ୟମାନଙ୍କ ସହିତ ଜ୍ୟୋତିକୁ କ'ଣ ତୁଳନା କରା ଯାଇପାରେ ? ବାବା ଖୁବ୍ ଯତ୍ନର ସହିତ ବାରମ୍ବାର କୋଷ୍ଠିକୁ ନିରୀକ୍ଷଣ କରୁଥା'ନ୍ତି । କେତେବେଳେ ତାଂକର ମୁଖ ଉଜ୍ଜ୍ୱଳ ହୋଇ ଉଠୁଥାଏ, ତ ପୁଣି କେତେବେଳେ ଆମ୍ବଡ଼ା ଖାଇବା ପରି ହେଇ ଯାଉଥାଏ। ସନାତନ ଏକ ଧ୍ୟାନରେ କେବଳ ବାବାଂକ ମୁହଁକୁ ଚାହିଁଥା'ନ୍ତି। ଅନ୍ୟମାନେ ହଁ କି ନା' ଉତ୍ତର ପାଇବାକୁ ଅପେକ୍ଷା କରି ରହିଥା'ନ୍ତି ।

-ଓଠକୁ କାମୁଡ଼ି ଖୁବ୍ ରୁଦ୍ଧ କଣ୍ଠରେ ବାବା କହିଲେ - 'ଜ୍ୟୋତିର ବିବାହ ଯୋଗ ଖୋଲି ଯାଇଛି। ଯେ କୌଣସି ପ୍ରକାରେ ଏ' ବର୍ଷ ତା'ର ବାହାଘର ହୋଇଯିବ। ତୁମଘରର ପୂର୍ବ ଦିଗରେ ଥିବା କୌଣସି ଏକ ସମ୍ଭ୍ରାନ୍ତ ପରିବାରରେ ତା'ର ବିବାହ ହେବ। କିନ୍ତୁ ... ଛାଡ଼, 'ବିଧାତା ଲିଖନ, କେ କରିବ ଆନ'। ବୁଝିଲ ସନାତନ ! ଏ'

ବାହାଘରକୁ କେହି ଅଟକାଇ ପାରିବେ ନାହିଁ । ଏବେ କୁହ, ପ୍ରସ୍ତାବଟି ଆସିଛି କେଉଁଠୁ' ?

ସନାତନ ବାବାଂକ ମୁଖଭଙ୍ଗୀରୁ ଅନୁମାନ କରିନେଲେ, ଜ୍ୟୋତିର କୋଷ୍ଠିରେ ବାବା କୌଣସି ପ୍ରକାର ଗ୍ରହଦୋଷ ଥିବାର ଦେଖି ପାରିଛନ୍ତି, କିନ୍ତୁ ତାକୁ ସେ ଖୋଲି କହିବାକୁ ଚାହୁଁ ନାହାନ୍ତି । ସେ ସାହସ କରି ପଚାରି ଦେଲେ, 'ବାବା ! ଝିଅର କୋଷ୍ଠିରେ କିଛି ଦୋଷ ଅଛି କି ? ମୋତେ ଟିକେ ଦୟାକରି ସବୁ କଥା ଖୋଲି କହନ୍ତେ ନାହିଁ ' ?

ବାବା ଏଥର ଗମ୍ଭୀର ହୋଇ ଉଠିଲେ। ଉତ୍ତରୀୟ କାନିରେ ନିଜ ଆଖିକୁ ପୋଛି କହିଲେ, 'ସନାତନ ! ଶିଷ୍ୟ ଏବଂ ପୁତ୍ର ମଧ୍ୟରେ କୌଣସି ପ୍ରକାର ପ୍ରଭେଦ ନାହିଁ । କୋଷ୍ଠିରେ ମୁଁ ଯାହା ଦେଖି ପାରୁଛି, ନିଜକୁ ମଧ୍ୟ ବିଶ୍ୱାସ କରି ପାରୁନାହିଁ । ଏ' କଥା ମଧ୍ୟ ମୁଁ ଜାଣେ, ତୁମେ ତା'ର କୌଣସି ପ୍ରତିକାର କରି ପାରିବ ନାହିଁ ।

ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରେ ତେଣିକି ଯାଇ। ଆମକୁ ପୂର୍ବ ନିର୍ଦ୍ଧାରିତ ପଥରେ ଯିବାକୁ ହିଁ ପଡ଼ିବ। କେବଳ ତୁମେ ପ୍ରସ୍ତାବିତ ବରପକ୍ଷ ସଂପର୍କରେ ପୁନର୍ବିଚାର କରି ପାରିବ। ଏଥିପାଇଁ ତୁମର ଇଚ୍ଛା - ରୁଚି ତଥା ଜ୍ୟୋତିର ଭାଗ୍ୟ ଉପରେ ଛାଡ଼ି ଦେବାକୁ ମୁଁ ପରାମର୍ଶ ଦେଉଛି' ।

ସନାତନ କାଗଜ ଖଣ୍ଡିଏ ଖୋଲି ବାବାଂକ ହାତକୁ ବଢ଼େଇ ଦେଇ କହିଲେ, ' 'ପୁଅଟିର ଜାତକ ଟିପ୍ପଣୀ ମଧ୍ୟ ମୁଁ ନେଇ ଆସିଛି ବାବା । ଏହାକୁ ନେଇ ଜାତକ ମେଳ କରି ଦେଖନ୍ତୁ ।

-ପୁଅଟି ସଂପର୍କରେ ମୁଁ ଯାହା ଶୁଣିଛି। ସେ କଥା ଟିକେ କହିଦେବି। ଆପଣମାନେ ସମସ୍ତେ ଜ୍ୟୋତିର ଶୁଭ ଚିନ୍ତକ । ବାବାଂକ ପରାମର୍ଶ ଅନୁସାରେ ଆପଣମାନେ ଯାହା କହିବେ, ତାହା ହିଁ କରିବି। ମୁଁ ତ ବାବାଂକ ନିକଟରେ ନିଜକୁ ସମର୍ପଣ କରି ଦେଇ ସାରିଛି' ।

ସନାତନଙ୍କଠାରୁ ପୁଅର ଜାତକ ନେଇ ବାବା ଦେଖି କହିଲେ, 'ଆଉ କେଇଟା ଦିନ ପରେ ଜ୍ୟୋତିକୁ ଅଠର ପୂରିବ। ବିବାହ ପାଇଁ ଇଏ ବୟସ ହେଉଛି - ଆଇନ୍ ସମ୍ମତ। ମୁଖମଣ୍ଡଳ ତାଂକର ଉଜ୍ଜ୍ୱଳ ହେଇ ଉଠିଲା। ସେ ଉଚ୍ଚ ସ୍ୱରରେ କହି ଉଠିଲେ, ଚମତ୍କାର। ଜ୍ୟୋତି ପାଇଁ ଅନ୍ୟତ୍ର ବର ଖୋଜିବାର ଆଉ ଆବଶ୍ୟକ ନାହିଁ। ବର କନ୍ୟା ଦୁହିଁଙ୍କର ରାଜ ଯୋଟକ ପଡ଼ିଛି, ପୁଣି ଦୁହିଁକର ପଞ୍ଚମେ ବୃହସ୍ପତି । ଖୁବ୍ ଶୀଘ୍ର ବିବାହ ଯୋଗ, ପାଠ କହୁଛି।

ବାବାଂକ ତୁଣ୍ଡରୁ କଥା ନସରୁଣୁ। ଉପସ୍ଥିତ ଭକ୍ତ ଓ ସାଧୁମାନେ ହସ ହସ ମୁହଁରେ ଜ୍ୟୋତିର ବାହାଘରକୁ ସ୍ୱୀକୃତି ଦେଇଦେଲେ। ସନାତନ ଦୁଇହାତ ଯୋଡ଼ି ସମସ୍ତଙ୍କ ନିକଟରେ କୃତଜ୍ଞତା ଜଣାଇ କହିଲେ - 'ମୁଁ ତ ନିମିତ୍ତ ମାତ୍ର। ଆପଣମାନେ ହିଁ ସବୁ ଦାୟିତ୍ୱ ବହନ କରିବେ । ତେବେ ସିନା ପ୍ରଭୁ ଅଲେଖ ମହିମାଂକ ଇଚ୍ଛା ପୂରଣ ହେବ' ।

'ପୁଅଟି ଏବେ କ'ଣ କରୁଛି ? ତା'ର ବଂଶ ପରିଚୟ କଥା କିଛି କହିଲ ନାହିଁ ଯେ, ସନାତନ' ! ମଧୁବାବା କହି ପକାଇଲେ ।

ସନାତନ ମୁଣ୍ଡ ତଳକୁ କରି କହିଲା - 'ବାବା, ବିକ୍ରମପୁର ଗାଆଁରେ ପୁଅର ଘର। ତା' ବାପା ତ ଜଣେ ମାଷ୍ଟର ଥିଲେ। କିନ୍ତୁ ପୁଅକୁ ପାଞ୍ଚବର୍ଷ ହେଲା ବେଳକୁ ବଜ୍ରାଘାତରେ ବିଚରା ଆର ପାରିକି ଚାଲିଗଲେ' ।

ନିରାକାର ବାବା ବିକ୍ରମପୁର କଥା ଶୁଣି କହିଲେ - 'ବାବା ସନାତନ ! ତମେ ସେ ସରବରାକାର ବୁଢ଼ାର ପୁଅ କଥା କହୁ ନାହଁ ତ' ?

- ' ହଁ ଆଜ୍ଞା । ମାଷ୍ଟରଙ୍କ ବାପା ବିକ୍ରମପୁରର ସରବରାକାର ଥିଲେ। ସିଏ ବି ଚାଲି ଗଲେଣି। ପରିବାର ବୋଲି ମାଷ୍ଟରଂକ ସ୍ତ୍ରୀ ଆଉ ତାଂକର ବିଧବା ଭଉଣୀ ସହିତ ଏଇ ଏକମାତ୍ର ପୁଅ। ଅଚଳାଚଳ ସଂପତ୍ତି। କିନ୍ତୁ ଭଗବାନ ତ ମାଷ୍ଟରଂକୁ ସହି ପାରିଲେ ନାହିଁ। ଚାଷବାସ ଆଉ କରିବ କିଏ ? ଯାହାକୁ ଜମି ଭାଗ ଦିଆଗଲା, ସିଏ ଯାହା ମାରି ପିଟି ଖାଇଲେ। କେହି କେହି ଜବରଦସ୍ତ ମାଡ଼ି ବସି ଜମିକୁ ମୋର ବୋଲି କହିଲେଣି। ଏ'କଥା ସବୁ ଡ଼ମ୍ବରୁ ମାଙ୍କେ ଆଜି କହୁଥିଲେ। ସିଏ ହିଁ ଏହି ପ୍ରସ୍ତାବ ଧରି ଆସିଥିଲେ' ।

ସନାତନଙ୍କ ତୁଣ୍ଡରୁ କଥା ଛଡ଼େଇ ନେଇ ମଧୁବାବା କହିଲେ, 'ହଉ ଏବେ ପୁଅଟି କଥା କୁହ।'

'ଆଜ୍ଞା ! ପୁଅଟି ଏବେ କଟକରେ ରହି ଡ଼ାକ୍ତରୀ ପାଠ ପଢୁଛି। ଏଇ ବର୍ଷ ତା'ର-ପଢ଼ା ଶେଷ ହୋଇଯିବ।

ବିଧବା ମାଆଟି ତାର ଭାରି ବ୍ୟସ୍ତ। ଯେମିତି ହେଲେ, ଏଇବର୍ଷ ପୁଅର ବାହାଘର କରିଦେବ। ସିଏ କେମିତି କେଉଁଠୁ ଆମ ଜ୍ୟୋତିର ପ୍ରଶଂସା ଶୁଣି ପାରିଛନ୍ତି କେଜାଣି ? ଦୁଇ ବୁଢ଼ୀଙ୍କର ଏକା ଜିଦ୍ ଜ୍ୟୋତିକୁ ବୋହୂ କରି ଶୀଘ୍ର ଘରକୁ ନେଇଯିବେ'।

-ଦେଖନ୍ତୁ ବାବା ! ମୋର ଅବସ୍ଥା ଯାହା, ପୁଅ ଘରର ଅବସ୍ଥା ବି ସେଇଆ । ଏଣେ ମୋର ବଂଶ ବୁଡ଼ିବାକୁ ଯାଉଥିବା ବେଳେ, ତେଣେ ମାଷ୍ଟରଂକ ଏକମାତ୍ର କୁଳ ନନ୍ଦନ ସେଇ ପିଲାଟି । ଅସଲ କଥା ହଉଛି, ପିଉସୀ ବୁଢ଼ୀଟାକୁ ବେମାର ହେଲାଣି । ସିଏ ତ କୋଳେଇ କାଖେଇ ଛୁଆଟାକୁ ମଣିଷ କରିଛି । ଦି'ଜଣ ବୁଢ଼ୀଙ୍କର ପୁଅଟି ହଉଛି, ଅନ୍ଧର ନୟନ, ରଂକ ରତନ । କେତେବେଳେ ବୁଢ଼ୀର କ'ଣ ହୋଇଯିବ ? ସେଇଥି ପାଇଁ ସେମାନେ ପୁଅର ବାହାଘରଟି-ଦେଖିବାକୁ ବ୍ୟସ୍ତ' ।

ପୁଣିଥରେ ମଧୁବାବା ସନାତନଙ୍କ ତୁଣ୍ଡରୁ କଥା ଛଡ଼େଇ ନେଇ କହି ପକାଇଲେ-'ଅସଲ କଥା ସେଇଆ ନୁହଁ ମ । ଅସଲ କଥା ହେଲା, ବୁଢ଼ୀ ଦି'ଜଣ ନାତିଟିଏ ଦେଖିବାକୁ ବ୍ୟସ୍ତ ଥିବେ । ଏଣେ ତମର ମନ ବି ହକ ହକ ହଉଥିବ-ନାତି କି ନାତୁଣୀଟିଏ ଶୀଘ୍ର ଦେଖିବାକୁ ।

ହଉ ବାବା ! ଏବେ ତ ସବୁ ଠିକ୍ ଠାକ୍ ହୋଇଗଲା । ବାହାଘର ଆୟୋଜନରେ ଲାଗିପଡ଼, କିନ୍ତୁ ଗୋଟାଏ କଥା, ବାହାଘରଟି ଏଇ ମଠରେ ହିଁ ହବ । ବାବା ନିଜେ ହେବେ - ବାହାଘରର କର୍ତ୍ତା' ।

ମଧୁବାବାଂକ କଥାରେ ସମ୍ମତି ସୂଚନା ପୂର୍ବକ ମୁଣ୍ଡ ହଲାଇ ନିରାକାର ବାବା ଏକ ଦୀର୍ଘଶ୍ୱାସ ପକାଇଲେ । ଏଭଳି ଏକ ଶୁଭକାର୍ଯ୍ୟ ଆରମ୍ଭ ହେବାକୁ ଯାଉଥିବାରୁ ସମସ୍ତେ ବାବାଂକ ସହିତ ମିଶି - ପାଳି ଧରିଲେ -

*"ଅଲେଖ ଅବାୟୁ ଶୂନଂ ଅମୂର୍ତ୍ତି ପରମ ପଦଂ,*

*ଅକୂଳଂ ଅମୂଳଂ ନାମ ଅନାଦଂ ବ୍ରହ୍ମ ମୁଚ୍ୟତେ ।"*






ଜ୍ୟୋତି ଜାଣେ, ବାପା ବରଘର ଦେଖି ବହୁତ ଖୁସି ହେଇଛନ୍ତି । ମଧୁବାବା ମଧ୍ୟ ତାଂକ ସାଂଗରେ ବରଘର ଦେଖିବାକୁ ଯାଇଥିଲେ । ଆଜିର ଯୌତୁକ ଯୁଗରେ ପୁଣି ବିନା ଯୌତୁକରେ ବାହାଘର ହେବ, ଏ' କଥା କ'ଣ ବିଶ୍ୱାସ କରା ଯାଇପାରେ ?

ତଥାପି ଏହି ସଂସାରରେ ଏଇମିତି କେତେଜଣ ସତ୍ ମଣିଷ ଅଛନ୍ତି, ସେହିମାନଂକ ଧର୍ମବଳରେ ହିଁ ସଂସାର ଚାଲିଛି । ମଧୁବାବାଂକ ଅନୁରୋଧକୁ ତା'ର ଭାବିଶାଶୂ ବିନା ସଂକୋଚରେ ଗ୍ରହଣ କରିନେଲେ । ମହିମା ଧର୍ମର ରୀତି ଅନୁସାରେ ଅଖଣ୍ଡଜ୍ୟୋତି ମନ୍ଦିରରେ ବାହାଘର କରିବାକୁ ମଧୁବାବା ଅନୁରୋଧ କରିଥିଲେ ।

ଜ୍ୟୋତିର ଭାବିଶାଶୂ ଅନ୍ୟମାନଂକୁ ପୁଣି ବୁଝେଇ ଦେଇଥିଲେ, 'ଯଦି କିଛି ଆଡ଼ମ୍ବର ଉତ୍ସବ କରିବାର ଅଛି, ପୁଅ-ବୋହୂ ଆସନ୍ତୁ । ଚଉଠି ଦିନ ଆମ ଗାଁ'ରେ ସେ ସବୁର ଆୟୋଜନ କରିବା । ଜଣେ ଆଧ୍ୟାତ୍ମିକ ଚିନ୍ତାଧାରାର ମଣିଷ ମନରେ କଷ୍ଟ ଦେଇ, ଆମକୁ କି' ସୁଖ ମିଳିବ' ? ଏ' କଥା ସେ ବୋଉଠାରୁ ଶୁଣିଥିଲା ।

- ବାବାଂକ ନିର୍ଦ୍ଧାରିତ ତିଥି, ବାର, ଶୁଭ ମୁହୂର୍ତ୍ତ ଅନୁସାରେ ଶୁଭ ପରିଣୟ ପାଇଁ ସମସ୍ତ ଆୟୋଜନ ଚାଲିଲା । ଯେହେତୁ ପିତାଙ୍କ ଗୁରୁ ନିରାକାର ବାବା ଏହି ବିବାହକୁ ସମ୍ମତି ପ୍ରଦାନ ଦେଇଛନ୍ତି । ତେଣୁ ଜ୍ୟୋତିର ଆଉ କିଛି କହିବାର ନଥିଲା ।

ବାବାଂକ ଆଶ୍ରମ ହେଉଛି - ତା'ପାଇଁ ସବୁଠାରୁ ପ୍ରିୟତମ ସ୍ଥାନ । ସାଧୁମାନେ ହେଉଛନ୍ତି, ତା'ର ପୂଜ୍ୟ ତଥା ଶୁଭ ଚିନ୍ତକ । ଅତି ପରିଚିତ ଜ୍ୟୋତି ମନ୍ଦିରରେ ପୁଣି ତା'ର ବାହାଘର ହେବ । ପାରଂପରିକ ଢ଼ଂଗରେ ଯେମିତି ବାହାଘର ହେବା କଥା, ସେଥିରେ ଅବଶ୍ୟ ଅନେକ କିଛି ବ୍ୟତିକ୍ରମ ହେବ ।

ଦିନେ ତା'ର ବାପା-ମା' କଥା ହେଉଥିଲେ - ବାବା ତାଂକୁ କୁଆଡ଼େ ଭବିଷ୍ୟତ ବାଣୀ ଶୁଣେଇଛନ୍ତି ଯେ, 'ସେ ଏକ ଅସାଧାରଣ ନାରୀ ହେବ । ତା'ଠାରୁ ଏକ ଦେବଶିଶୁ ଜନ୍ମ ଲାଭ କରିବ' ।

ଏମିତି ବେଳେ ବେଳେ ଏକୁଟିଆ ବସି ଜ୍ୟୋତି କେତେ କ'ଣ ଭାବେ ? ବାବାଂକ କଥା ତା'ମନେ ପଡ଼ିଗଲେ, ତାକୁ ଭାରି ଲାଜମାଡ଼େ । ସେ ନିଜକୁ ନିଜେ ସମୀକ୍ଷା କରେ । 'ମୁଁ ଏମିତି କ'ଣ ବିଶେଷ ଗୁଣର ଅଧିକାରୀ ହେଇଛି ଯେ, ମୋ କୋଳରେ ପୁଣି ଜଣେ ଦେବଶିଶୁ ଜନ୍ମଲାଭ କରିବାକୁ ଅପେକ୍ଷା କରି ରହିଛି ? ଏଇ ଆଶ୍ରମରେ ବାବାଂକର ସାମାନ୍ୟ ସେବା ଆଉ ମହିମା ଗୋସେଇଁଙ୍କ ସଂପର୍କରେ ମୋର ସାମାନ୍ୟ ଜ୍ଞାନବଳରେ, ମୋର କ'ଣ ଏତେ ପୁଣ୍ୟବଳ ହୋଇଗଲା' ?

ସେଦିନ ମଧୁବାବା କହୁଥିଲେ - 'ପୂର୍ବାର୍ଜିତ ବିଦ୍ୟା, ପୂର୍ବାର୍ଜିତ ଭାର୍ଯ୍ୟା, ପୂର୍ବାର୍ଜିତ ଧର୍ମ, ଅଗ୍ରେ ଧାବତି ଧାବତି । ପୂର୍ବ ଜନ୍ମର ସଦ୍‌ଗୁଣ ଓ ସଞ୍ଚିତ ଧର୍ମବଳ ଏ'ଜନ୍ମରେ ମଧ୍ୟ କାର୍ଯ୍ୟରେ ଲାଗିଥାଏ । ସେଇଥି ପାଇଁ କେତେକ ମଣିଷ କୌଣସି ପ୍ରକାର ସତ୍ କର୍ମ ନକରି ମଧ୍ୟ ଏଇ ସଂସାରରେ ସୁଖ ଭୋଗ କରି ଚାଲିଥା'ନ୍ତି' ।

- ହେଇପାରେ, ଯଶୋଦା କିମ୍ବା ଦେବକୀ ପୂର୍ବଜନ୍ମରେ କରିଥିବା ତପସ୍ୟା ଫଳରେ ଭଗବାନ ଶ୍ରୀକୃଷ୍ଣଙ୍କୁ କୋଳରେ ପାଇଥିଲେ । ଏମିତି କାହାଣୀ ତ ଅନେକ ପୁରାଣ ଶାସ୍ତ୍ରରେ ଅଛି । ଧର୍ମବଳ ହିଁ ପ୍ରକୃତ ବଳ ।

ପ୍ରକୃତିସ୍ଥ ହୋଇ ସେ ପୁଣି ଭାବେ - 'ଏସବୁ ଫାଲତୁ କଥା ଗୁଡ଼ାକୁ ମୁଣ୍ଡରେ ପୂରେଇ ଲାଭ କ'ଣ ? ବାବାଂକ ବାଣୀ ତ ନିଶ୍ଚୟ ସତ୍ୟରେ ପରିଣତ ହେବ । ଯାହା ହେବାର ହେଉଥାଉ । ବାହାଘର ତ ଠିକ୍ ହେଇ ଗଲାଣି । ବରଂ ସାଂଗ-ସାଥୀ, ବନ୍ଧୁ-ବାନ୍ଧବ ମାନଂକୁ ଛାଡ଼ି ନୂଆ ସଂସାରରେ କେମିତି ଚଳିବାକୁ ହେବ, ସେ ବିଷୟରେ ଚିନ୍ତା କରିବା ଉଚିତ ।

- କିନ୍ତୁ ମୁଁ ଯେ ଅସାଧାରଣ ନାରୀ ହେବି । ମୋ କୋଳରେ ଏକ ଦେବଶିଶୁ ଜନ୍ମ ନେବ । ଏଥିପାଇଁ ବୋଧହୁଏ ମୋର ବାହାଘରରେ ଏମିତି ଅନେକ ବ୍ୟତିକ୍ରମ ଘଟୁଛି । ଆଜିକାଲି ଯୁଗରେ ପୁଣି ଏମିତି ମାତୃଭକ୍ତ ଯୁବକ ଅଛନ୍ତି, ଯିଏ କି ନିଜ ଆଖିରେ ଝିଅକୁ ନଦେଖି ମଧ୍ୟ ବାହାଘର ପାଇଁ ରାଜି ହେଇ ଯାଉଛନ୍ତି ।

ତାଂକ ମାଆ କହିଦେଲେ, 'ମୁଁ ତ ଝିଅକୁ ଦେଖି ପସନ୍ଦ କରିଛି, ସିଏ କ'ଣ ଦେଖିବ ? ମୁଁ ଯାହାକୁ ବୋହୂ ହିସାବରେ ଗ୍ରହଣ କରିବି, ତାକୁ ସିଏ ସ୍ତ୍ରୀ ଭାବରେ ଗ୍ରହଣ କରିବାକୁ ବାଧ୍ୟ । ପୁଅର ମନ କଥାକୁ ମାଆଠାରୁ କ'ଣ ଆଉ କେହି ଅଧିକ ଜାଣିପାରେ' ?

ଏ'ସବୁ କଥାକୁ ଭାବୁ ଭାବୁ ଜ୍ୟୋତି ଅନ୍ୟମନସ୍କ ହୋଇପଡ଼େ । କଳ୍ପନାର ରାଜକୁମାର ଡାକ୍ତର ବର ଆସି ତା' ଆଗରେ ଠିଆ ହୋଇପଡ଼େ । ପରକା ପତରିଆ

ନିଶ, ଗୋରା ତକତକ ଚେହେରା, ପତଳା ଆଉ ଡେଙ୍ଗା ଲମ୍ବା ନାକ ତା' ଆଖି ଆଗରେ ଆଙ୍କି ହୋଇଯାଏ ।

ଲାଜେଇ ପଡ଼େ ଜ୍ୟୋତି । ପୁଣି ତା'ମନକୁ ଆସିଯାଏ, ଦେବଶିଶୁର ଯିଏ ପିତା ହେବାକୁ ଯାଉଛି, ସିଏ କ'ଣ କମ୍ ପୁଣ୍ୟବନ୍ତ ପୁରୁଷ ହୋଇଥିବ ! ମୁଁ ଯଦି ପୂର୍ବଜନ୍ମର ତପସ୍ୟା ବଳରେ ଦେବଶିଶୁର ମାଆ ହେବି । ସିଏ ବି ତା'ର ପୂର୍ବଜନ୍ମର ଧର୍ମବଳରେ ନିଶ୍ଚୟ ବଳୀୟାନ୍ ହୋଇଥିବ । ନଚେତ୍ ଏ'ଜନ୍ମରେ ତା'ର ବାପା କି ମା' ତା' ପାଇଁ ପୁଣ୍ୟକର୍ମ କରିଥିବେ ।

ଯଶୋଦା ସହିତ ନନ୍ଦରାଜାଂକର ପୁଣ୍ୟଫଳ ମିଶିଥିଲା ବୋଲି ସିନା କୃଷ୍ଣ ତାଂକ କୋଳକୁ ଆସିଥିଲେ ।

ସେଦିନ ଭାବୀଶାଶୂଙ୍କର ସ୍ପଷ୍ଟ କଥାଗୁଡ଼ାକ ତାକୁ ବେଶ୍ ଭଲ ଲାଗିଥିଲା । ଅନ୍ୟ ସ୍ତ୍ରୀ ଲୋକମାନଙ୍କ ଭଳି ତାଂକର ତିଳେ ମାତ୍ର ଲୋଭ ନାହିଁ । ସେ ବାପାଂକୁ କହିଥିଲେ, 'ସମୁଦି! ତମ ଝିଅକୁ ମୁଁ ଝିଅ କରି ନେଇ ଯାଉଛି । ଏଠି ସେ ଯେମିତି ଥିଲା, ମୋ ଘରେ ବି ସେମିତି ରହିବ । ଆମ ଘରେ ବିଧବା ନଣନ୍ଦଟିଏ ରହେ । ତାକୁ ଘର ଯାକର କାମ ନିଅଣ୍ଟ । ଆମେ ତାକୁ କାମ କରେଇ ଦବୁନାହିଁ । ବରଂ ତାକୁ ଆମେ ବସେଇ ତା'ଠାରୁ ଧର୍ମଚର୍ଚ୍ଚା ଶୁଣିବୁ । ସିଏ ତ ମହିମା ଧର୍ମ ଉପରେ ବେଶ୍ ଜ୍ଞାନ ଅର୍ଜନ କରି ସାରିଛି ।

ବାହାଘରର ମଧ୍ୟସ୍ଥି ଡ଼ମ୍ବରୁ ଆଜ୍ଞା ଯାହା କହୁଥିଲେ, ମୁଁ ନିଜେ ଦେଖୁଛି ସେଇୟା । ତେଣୁ ମୋର ଗୃହଲକ୍ଷ୍ମୀକୁ ମୁଁ ଯେତେ ଶୀଘ୍ର ସମ୍ଭବ ମୋ ଘରକୁ ନେଇ ଯିବାକୁ ଚାହେଁ ।'

ସେଦିନ ଭାବି ଶାଶୂମା' ବିଦା ହୋଇ ଗଲା ବେଳକୁ ମୋତେ କୁଣ୍ଢେଇ ପକେଇ କହିଥିଲେ, 'ମା ! ତୁ ମୋଟେ ଚିନ୍ତା କରିବୁ ନାହିଁ । ତୋ' ପାଇଁ ମୁଁ ସବୁ ଗହଣା ପତ୍ର ଗଢ଼ି ରଖିଛି । ବାପାଂକ ପାଖରେ କଛି ଜିନିଷ ପାଇଁ ଅଳି କରିବୁ ନାହିଁ । ସବୁ ଜିନିଷ ତୋ' ପାଇଁ ଆମ ଘରେ ଅଛି' ।

କାଲି ସଂଜବେଳେ ବୋଉ ବୁଝେଇ କହୁଥିଲା, 'ମଠ ଭିତରେ ବାହାଘର ହେଲେ ବି ଆଡ଼ମ୍ବର କରିଂବାରେ କିଛି ବାରଣ ନାହିଁ । ବ୍ରୋଇଁ ଯେମିତି ଆସିବାର କଥା, ସେଇମିତି ଆସିବେ । ବାଣ-ରୋଷଣୀ,ବାଜା ପେଁକାଳି, ନାଚ ଗୀତ ଯାହା ହେବାର କଥା ସବୁ ହେବ । କିନ୍ତୁ ଅଲେଖ ଧର୍ମ ରୀତି ଅନୁସାରେ କେବଳ ବାହାଘରଟା ଅଖଣ୍ଡ ଜ୍ୟୋତି ମନ୍ଦିରରେ ହିଁ ହେବ । ବ୍ରାହ୍ମଣ, ବାରିକ ଓ ନାହାକମାନଙ୍କ ବଦଳରେ ସାଧୁ

ସନ୍ନ୍ୟାସୀମାନେ ବର-କନ୍ୟାଙ୍କୁ ଶପଥ ପାଠ କରାଇବେ' ।

ବୋଉ ଆଗରୁ ଅଖଣ୍ଡ ଜ୍ୟୋତି ମନ୍ଦିରରେ ଅନେକ ବାହାଘର ଦେଖିଛି ସତ; କିନ୍ତୁ ମଠର ନୀତି ନିୟମ, କଟକଣା ସଂପର୍କରେ ସେ ବେଶି କିଛି ଜାଣିନାହିଁ କହିଲେ ଚଳେ । ବାପାଙ୍କୁ ସାଧୁବାବା ବାହାଘରର ସବୁ ରୀତି ନୀତି ବିଷୟରେ ସ୍ମରଣ କରାଇ ଦେଇଛନ୍ତି ! ଗୋମୟ ଓ ପବିତ୍ରଦ୍ୱାରା ବରକନ୍ୟା କେମିତି ଶୁଚି ହେବେ । ସମସ୍ତ ଗହଣା, ଲୁଗାପଟାକୁ କେମିତି ବାବାଂକ ମାଧ୍ୟମରେ ଶୂନ୍ୟଦେହୀ ପରମ ବ୍ରହ୍ମଙ୍କୁ ସମର୍ପଣ କରାଯିବ। ତା'ପରେ ବରକନ୍ୟାଙ୍କୁ କେମିତି ସ୍ନାନ ଶୁଚି କରାଯିବ। ବାବା ନିଜେ କେମିତି କନ୍ୟାକର୍ତ୍ତା ହେବେ, ସବୁ କଥା ଗୋଟି ଗୋଟି କରି ବୋଉକୁ ବୁଝେଇ ଦେଇଥିଲେ। ମୁଁ ଜାଣି ପାରୁଥିଲି, ବାପା ମୋତେ ଶୁଣେଇବା ପାଇଁ ସବୁ କଥାକୁ ନିଠେଇ ନିଠେଇ କହୁଥିଲେ ।

ମୋ ମନରେ କୌଣସି ପ୍ରକାର ଭୟ ବା ଆଂଶକା ନଥିଲା । କାରଣ ମୁଁ ଜାଣିଥିଲି, ମଠର ବାବାମାନେ ସମସ୍ତେ ମୋର ଅତି ନିଜର। ସେମାନେ ମୋତେ ତାଂକର ମାନସ କନ୍ୟା ବୋଲି ଧରି ନେଇଥା'ନ୍ତି । ନିଜେ ବାପାଙ୍କ ଗୁରୁ ବାହାଘର ଦାୟିତ୍ୱ ନେଇଛନ୍ତି। ସେମାନେ ଯିଏ ଯାହା କରିବେ, ସେ ସବୁ କେବଳ ମୋର ସୁଖ ଆଉ ମଂଗଳ ପାଇଁ କରିବେ। ଏଣୁ ତେଣୁ ଚିନ୍ତା କରିବା, ମୋର କିଛି ଦରକାର ନାହିଁ ।

ନିଜକୁ ଯେତେ ଆଶ୍ୱାସନା ଦେଲେ ବି ପୁଣି ଜ୍ୟୋତି ମନରେ ଅଜାଣତରେ ଏକ ଅଦୃଷ୍ଟ ଆଶଂକା ଦେଖାଦିଏ। ନିଜକୁ ନିଜେ ପଚାରେ, 'ମୁଁ ଜଣେ ଡାକ୍ତର ବରକୁ ନେଇ ସୁଖର ସଂସାର କରି ପାରିବି ତ ?

ଦୀର୍ଘଦିନ ଧରି ମହିମା ଗୋସାଇଁଙ୍କ ଚିନ୍ତାଧାରା, ଧର୍ମ ଭାବନା ଆଉ ବାବାଂକ ପ୍ରତି ମୋର ଯେଉଁ ଗଭୀର ଭକ୍ତି ରହିଛି, ସେଥିରେ କିଛି ବାଧା ସୃଷ୍ଟି ହେବ ନାହିଁ ତ ? ଯଦି ମୋର ଭାବୀସ୍ୱାମୀ ଏ' ସବୁକୁ ପସନ୍ଦ ନ କରନ୍ତି, ମୁଁ କ'ଣ ତାଂକ ମନକୁ ନେଇ ଅଲେଖ ମହିମା ଧର୍ମର ରୀତି ନୀତିଠାରୁ ଦୂରେଇ ରହି ପାରିବି ?

- ମୋର ମନେ ଅଛି, ବାପା ଗୁରୁଙ୍କଠାରୁ ଅଲେଖ ଦୀକ୍ଷା ନେବା ପରେ ଖଣ୍ଡିଏ ଛୋଟ ବହି ଘରକୁ ଆଣିଥିଲେ । ଖୁବ୍ ଯତ୍ନର ସହିତ ସେ ବହିକୁ ନିଜେ ବାରମ୍ବାର ପଢୁଥିଲେ। ମଝିରେ ମଝିରେ ବୋଉ ସେ ବହିଟିକୁ ପଢ଼ି ବେଶ୍ ଆତ୍ମ ସନ୍ତୋଷ ଲାଭ କରେ। ମୁଁ ଅକ୍ଷର ଶିଖିବା ପରେ ପରେ ସେ ବହିଟିକୁ ପଢ଼ିବା ଆରମ୍ଭ କରିଥିଲି। ସେଥିରେ ଲେଖାଥିବା ଭାବ ଓ ଭାଷାକୁ ତ ମୁଁ ବୁଝି ପାରୁ ନଥିଲି । ତଥାପି ମୋତେ କାହିଁକି କେଜାଣି ସେ ବହିକୁ ବାରମ୍ବାର ଉଚ୍ଚସ୍ୱରରେ ପଢ଼ିବାକୁ ଭଲ ଲାଗୁଥିଲା। ମୋର

କୁନି ତୁଣ୍ଡର ଅସ୍ପଷ୍ଟ ଉଚ୍ଚାରଣରେ ବାକ୍ୟଗୁଡ଼ିକୁ ବାପା, ବୋଉ ତଥା ଉପସ୍ଥିତ ଗ୍ରାମବାସୀମାନେ ତନ୍ମୟ ହୋଇ ଶୁଣୁଥିଲେ। ମୋତେ ବି ମୃଦୁ ପ୍ରଶଂସା କରୁଥିଲେ। ଏମିତି ବାରମ୍ବାର ପଢ଼ି ପଢ଼ି ପରମ ବ୍ରହ୍ମଙ୍କ ଶରଣ ପ୍ରାର୍ଥନାଟି ମୋର ମୁଖସ୍ଥ ହେଇ ଯାଇଥିଲା । ଆଜି ବି ମନେ ପଡ଼ିଯାଏ -

'ହେ, ପ୍ରଭୁ ମହା ମହିମାମୟ ! ସର୍ବାନ୍ତର୍ଯ୍ୟାମୀ ନାଥ ! ତବ ମହିମାରେ ଅନନ୍ତ କୋଟି ବ୍ରହ୍ମାଣ୍ଡ ପ୍ରକାଶିତ ହେଉଛି । ସେହି ମହିମାରେ ପୁଣି ବିଧୃତ ହୋଇ ରହିଛ, ଏହି ଅନନ୍ତ କୋଟି ବ୍ରହ୍ମାଣ୍ଡ । ତୁମରି ମହିମାରେ ବିଶ୍ୱ ଚଳ ପ୍ରଚଳ ହେଉଛି । ଆପଣ ଅଧଃ, ଉର୍ଦ୍ଧ୍ୱ ଓ ସର୍ବତ୍ର ଓତପ୍ରୋତ ଭାବେ ଜଡ଼ିତ। ଆପଣଂକଠାରୁ ଏହି ଜୀବାତ୍ମା ସମ୍ଭୁତ ହୋଇଅଛି। ଆପଣ ମହିମା ଅଲେଖ, ଅରୂପ, ଅନାମ, ଅଦେହ, ଅନନ୍ତ, ଅସ୍ପର୍ଶ, ଅଚିନ୍ତ୍ୟ ଓ ଅବ୍ୟକ୍ତ ପରଂବ୍ରହ୍ମ। ଆପଣ ଏ' ଆତ୍ମାର ପିତା, ମାତା, ବଂଧୁ ଓ ସହୋଦର। ଆପଣ ହିଁ ଜୀବର ବୁଦ୍ଧି, ବିବେକ ପୁଣି ଜ୍ଞାନଦାତା। ମୋ ହୃଦୟରୁ ସର୍ବ କଳୁଷ ବିନାଶ କରି ହୃଦୟକୁ ସୁନିର୍ମଳ କରନ୍ତୁ' ।

ପ୍ରତ୍ୟେକ ଦିନ ଏହି ପ୍ରାର୍ଥନାଟି ଆମ ଘରେ ବୋଲାଯାଏ। ବରଘର ଲୋକେ କ'ଣ ମୋଠାରୁ ଏ' ପ୍ରାର୍ଥନା ଶୁଣିବାକୁ ପସନ୍ଦ କରିବେ ? ହଉ ସେମାନଙ୍କ ପସନ୍ଦ, ନାପସନ୍ଦ ଉପରେ ମୋର କି ଯାଏ ଆସେ ?

ବାବା କହିଥିଲେ, 'ମନର ମୂଳେ ଏ' ଜଗତ। ମନ ନିର୍ମଳ ଥିଲେ, ଗଡ଼ିଆ ଗଂଗା। କେହି ନଗାଆନ୍ତୁ । ସଂଜ ହେଲେ ତ ପ୍ରାର୍ଥନାଟି ବଳେ ବଳେ ମନକୁ ଆସିଯିବ। ସିଏ ଡାକ୍ତର ହେଲେ ତ କ'ଣ ହେଲା ? ବିଶ୍ୱ ନିୟନ୍ତା ପରଂବ୍ରହ୍ମଂକୁ ପ୍ରାର୍ଥନା କରିବାରେ ଅସୁବିଧା କେଉଁଠି ରହିଲା ? ଧୀରେ ଧୀରେ ସିଏ ବି ମୋ ସାଂଗରେ ପ୍ରାର୍ଥନାରେ ବସିବେ। ସେଠିକିଗଲେ, ଶାଶୂମା' ଆଉ ପିଇସୀ ଶାଶୂ ଦୁଇଜଣଙ୍କୁ ଆଗ ଏହି ପ୍ରାର୍ଥନାଟିକୁ ଶିଖାଇ ଦେବି' ।

ଜ୍ୟୋତିର ସଂବିତ ଫେରି ଆସେ । ନିଜକୁ ନିଜେ କହେ, 'ଗୋଟାଏ ଜାଗାରେ ଚୁପ ଚାପ୍ ବସିଲେ, ମନ ଭିତରେ ଏମିତି ଗୁଡ଼ାଏ ବାଜେକଥା ପଶିଯାଏ। ଏତେ ଆଗରୁ ଏ' କଥାଗୁଡ଼ାକୁ ଭାବି ହେବା ଠିକ୍ ହେଉନାହିଁ '।

ବସିଥିବା ସ୍ଥାନରୁ ଜ୍ୟୋତି ଉଠିଯାଏ, ନିଜକୁ ଭୁଲେଇବା ପାଇଁ ବୋଉ ସାଂଗରେ ମିଶି ଘର କାମ କରି ପକାଏ ।






ବାହାଘର ଆଉ ମାତ୍ର ପନ୍ଦର ଦିନ ରହିଲା । ବାହାଘରଟା ଯେତିକି ପାଖେଇ ଆସୁଛି, ଜ୍ୟୋତିର ମନ ଭିତରଟା ସେତିକି ବେଗରେ ଦୌଡୁଛି । ବଂଧୁ ବାନ୍ଧବଙ୍କୁ ଖୋଜା ଲୋଡ଼ା ଚାଲିଛି ।

'ବାପା ଏକୁଟିଆ ଲୋକ । ଯଦି ଘରେ ବଡ଼ ଭାଇଟିଏ ଥାଆନ୍ତା, ତେବେ ତାଂକ କାନ୍ଧକୁ କାନ୍ଧ ମିଳେଇ କାମଗୁଡ଼ାକୁ ଉଠେଇ ନେଉଥା'ନ୍ତା । କ'ଣ କରିବେ ? ପୁଅଟିଏ ପାଇଁ ବାପା-ବୋଉ ଯେମିତି ବ୍ୟାକୁଳ ହେଉଥିଲେ, ସେ କଥା କ'ଣ ତାକୁ ଜଣାନାହିଁ । ମଧୁବାବାଂକ ଭରସା ପାଇ ସେ ଅଲେଖ ମହିମା ଗୋସେଇଁଙ୍କର ଶରଣ ପଶିଲେ । ଦୀକ୍ଷା ନେଲେ । ତଥାପି ଭଗବାନ ତାଂକ ଦୁଃଖ ବୁଝିଲେ ନାହିଁ । ମୋ ମୁହଁକୁ ଚାହିଁ ବେଶ୍ ହସ ଖୁସିରେ ତାଂକର ଦିନଗୁଡ଼ାକ ବିତି ଯାଉଥିଲା ।

ଆଉ ପନ୍ଦର ଦିନ ପରେ ବାପା-ବୋଉ କେମିତି ଏକୁଟିଆ ଚଳିବେ କେଜାଣି ? ବୋଉ ତୁଣ୍ଡରୁ ଜ୍ୟୋତି ଶବ୍ଦ ଆଉ ଶୁଣାଯିବ ନାହିଁ । ବାପାଙ୍କ ଆଖିର ଜ୍ୟୋତି ଲିଭିଯିବ । କେଡ଼େ ସରଳ ମଣିଷଟିଏ ମୋର ବାପା ! ମୋ ସୁଖ ପାଇଁ ସେ ସବୁ କିଛି ତ୍ୟାଗ କରିବାକୁ ପ୍ରସ୍ତୁତ । ମୋତେ ତ ସିଏ ନିଜର ଝିଅ ବୋଲି ମନେ କରନ୍ତି ନାହିଁ । ବରଂ ମୁଁ ଅନୁଭବ କରିଛି, ସତେ ଯେମିତି ସ୍ୱର୍ଗର କୌଣସି ଦେବୀଙ୍କୁ ସିଏ ମୋ ମାଧ୍ୟମରେ ଦେଖୁଛନ୍ତି, ଆଉ ତାଂକରି ସେବା ପୂଜାରେ ଲାଗି ରହିଛନ୍ତି ।

ସାଂଗ ସାଥୀ, ବଂଧୁ ବାନ୍ଧବ ଓ ସାଧୁ ସନ୍ଥ ସମସ୍ତଙ୍କ ଆଗରେ ସେ କହି ପକାନ୍ତି - 'ଆମର ଜ୍ୟୋତି ଅନ୍ୟ ଝିଅଙ୍କ ପରି ସାଧାରଣ ଝିଅ ନୁହେଁ, ତା' କୋଳରେ ନିଜେ ମହିମା ଗୋସେଇଁ ଜନ୍ମ ଗ୍ରହଣ କରିବେ । ଏ'କଥା ନିଜେ ନିରାକାର ବାବା ଭବିଷ୍ୟ ବାଣୀ ଶୁଣାଇଛନ୍ତି ।

ବାପାଂକ କଥା ଶୁଣିଲେ, ଆଉ ତାଂକର ସରଳ ବିଶ୍ୱାସକୁ ଦେଖିଲେ; ମୋ

ମନଟା କେମିତି କେମିତି ହେଇଯାଏ । ସତରେ ମୁଁ ଜଣେ ଦେବୀ ହୋଇ ଦେବଶିଶୁର ଜନନୀ ହେଇ ପାରିବି? ଏଥିପାଇଁ ମୋତେ ଆହୁରି ଅଧିକ କ'ଣ କରିବା ଉଚିତ୍, ମୁଁ ଜାଣିପାରେ ନାହିଁ । ମୋର ବାପା-ବୋଉ ଏବଂ ସାଧୁ-ସନ୍ଥଙ୍କ ପାଇଁ ମୁଁ ସବୁକିଛି ତ୍ୟାଗ କରିବାକୁ ପ୍ରସ୍ତୁତ । ପ୍ରଭୁ ମହାମହିମ ମହିମା ଗୋସେଇଁଙ୍କ ନିକଟରେ ପ୍ରତିଦିନ ମୁଁ ଏହି ପ୍ରାର୍ଥନା କରେ । ବାବା କହନ୍ତି - 'ପରମପିତା ପରଂବ୍ରହ୍ମ ସୂକ୍ଷ୍ମରୁ ସୂକ୍ଷ୍ମତର ଏବଂ ମହତରୁ ମହତ୍ତର; ସେ ବ୍ରହ୍ମାଦି ସ୍ତମ୍ଭ ପର୍ଯ୍ୟନ୍ତ ପ୍ରାଣୀ ସମୂହର ହୃଦୟ-ଗୁହାରେ ଆତ୍ମ ସ୍ୱରୂପରେ ନିହିତ ଅଛନ୍ତି । ତାଂକରି ନିର୍ଦ୍ଦେଶରେ ହିଁ ଆମେ ପରିଚାଳିତ ହେଉଛୁ । ତାଂକ ନିକଟରେ ଆମେ ସଂପୂର୍ଣ୍ଣ ଭାବେ ନିଜକୁ ସମର୍ପଣ କରିଦେଲେ, ସିଏ ହିଁ ଆମର ଦାୟିତ୍ୱ ବହନ କରିନେବେ' ।

ଏହିଭଳି ସଦ୍‌ଭାବନାରେ ଜ୍ୟୋତି ବୁଡ଼ି ରହିଥିବା ବେଳେ ମଧୁବାବା ତାଙ୍କ ଦାଣ୍ଡ ଦୁଆରେ ପହଁଚି ଗଲେ । ଗୁରୁ ମହିମା ଅଲେଖ ଧ୍ୱନିରେ ଦାଣ୍ଡଘର କମ୍ପି ଉଠିଲା । ଜ୍ୟୋତି ବାବାଂକ ସେବା ଯତ୍ନ ପାଇଁ ତତ୍ପର ହେଇ ଉଠିଲା । ବାବା ତାଂକର ତାଳପତ୍ର ଛତ୍ରୀଟିକୁ କାନ୍ଥକୁ ଆଉଜେଇ ଦେଇ ତା' ବାପା-ବୋଉଙ୍କ ସାଂଗରେ କଥା ହେଲେ । ତାକୁ ପାଖକୁ ଡ଼ାକି କହିଲେ, 'ମା' ଜ୍ୟୋତି ! ତୁ କେବଳ ତୋ' ବାପା-ବୋଉଙ୍କ ପାଇଁ ନୁହଁ, ଆମେ ଭାବୁଛୁ, ତୁ ମାନବ ସମାଜ ପାଇଁ ମଧ୍ୟ ଜ୍ୱଳନ୍ତ ଜ୍ୟୋତିଟିଏ । ତୁ ତ ଅନେକ ଧର୍ମତତ୍ତ୍ୱ, ପ୍ରାର୍ଥନା ଇତ୍ୟାଦି ଜାଣିଛୁ । ତୋରି ମାଧ୍ୟମରେ ଦିନେ ମହିମା ଧର୍ମର ମହିମା ମହତ୍ତର ହେବ ବୋଲି ବାବାଙ୍କର ଗଭୀର ବିଶ୍ୱାସ ରହିଛି । ଆଉ କେଇଟା ଦିନ ପରେ ତୁ ତୋ' ଶାଶୂଘରକୁ ଚାଲିଯିବୁ । ସେଠାକାର ପରିବେଶ ତୋତେ ଏ'ଦିଗରେ ସହାୟକ ହେବ କି ନାହିଁ, କିଏ ଜାଣେ ? ତେବେ ଆଜି ମୋତେ ବାବା ତୋ' ପାଖକୁ ପଠାଇଛନ୍ତି - ଅଲେଖ ମହିମା ସଂପର୍କରେ ଅଧିକ କିଛି ଜ୍ଞାନ ପ୍ରଦାନ କରିବାକୁ । ଯା' ମାଆ, ତୁ ଏବେ ପ୍ରସ୍ତୁତ ହୋଇ ଯା । ମୁଁ ବାପା - ବୋଉଙ୍କ ସାଂଗରେ ଟିକେ କଥା ବାର୍ତ୍ତା ହେଇସାରିଲେ, ତା' ପରେ ଠାକୁର ଘରେ ବସିଯିବା' ।

ଏଇ ଅଳ୍ପ ସମୟ ଆଗରୁ ଜ୍ୟୋତି ଠିକ୍ ଏଇ କଥା ହିଁ ଭାବୁଥିଲା । ସତେ ଯେମିତି ବାବା ତା'ର ମନକଥା ବୁଝିପାରି ମଧୁବାବାଂକୁ ତା' ପାଖକୁ ପଠେଇଛନ୍ତି । ତରବର ହେଇ ସେ ହାତ ଗୋଡ଼ ଧୋଇ, ଧୂଆ ଲୁଗା ପାଲଟି ପକେଇ ଓ ଠାକୁର ଘର ସଫା କରି ଆସନ ବିଛେଇ ଦେଲା । ମଧୁବାବାଂକ ପାଇଁ ସ୍ୱତନ୍ତ୍ର ଆସନ ପଡ଼ିଲା । ଧୂପ ଦୀପ ବାସ୍ନାରେ ଠାକୁର ଘରଟି ମହମହ ବାସି ଉଠିଲା । ଧର୍ମ ଆଲୋଚନା ପାଇଁ

ପରିବେଶଟି ବେଶ୍ ଅନୁକୂଳ ହେଇ ଥିବାରୁ ଦୁଇ ତିନି ଘଣ୍ଟା ଗୋଟିଏ ଜାଗାରେ ବସି ରହିବା ପାଇଁ କୌଣସି ପ୍ରକାର ଅସୁବିଧା ନଥିଲା ।

ମଧୁବାବା ତା' ବାପା-ବୋଉଙ୍କ ସାଂଗରେ ଠାକୁର ଘରେ ପ୍ରବେଶ କଲେ । ନିଜ ନିଜ ଆସନରେ ସମସ୍ତେ ବସିଲେ । ଜ୍ୟୋତି ହାତ ଯୋଡ଼ି 'ମହିମା ଅଲେଖ ପରଂବ୍ରହ୍ମ ଶରଣଂ' ମନ୍ତ୍ର ପାଠ କରି ବାପାଙ୍କ ପାଖରେ ବସିଲା । ଗାଆଁର କେତେଜଣ ଧର୍ମପ୍ରାଣ ଲୋକ ଜଣକ ପରେ ଜଣେ ଆସି ଯିଏ ଯାହାର ସ୍ଥାନ ମାଡ଼ି ବସିଲେ ।

ମଧୁବାବା ଆଖି ଢ଼ଳ ଢ଼ଳ କରି ଆରମ୍ଭ କଲେ -

*"ସତ୍ୟରୂପଂ ପରଂବ୍ରହ୍ମ, ସତ୍ୟଂ ବ୍ରହ୍ମ ସନାତନମ୍" ।*

- ମହିମା ଧର୍ମ କେବଳ ଜଗତର ଆଦି କାରଣ । ବିଶୁଦ୍ଧ ପରଂବ୍ରହ୍ମ ପରମାତ୍ମାଙ୍କର ଅଭିବ୍ୟଞ୍ଜକ ମାତ୍ର । ମହିମା ସ୍ୱାମୀଙ୍କର ଆଦେଶ ରହିଛି, 'ମହିମା ଧର୍ମ ସମାଜର ପ୍ରକୃତ ଗୁରୁ ହେଉଛନ୍ତି - ପ୍ରଭୁ ପରମାତ୍ମା । କିନ୍ତୁ, ଉପଦେଶ ଦେବା ନିମନ୍ତେ ସନ୍ନ୍ୟାସୀ ସିଦ୍ଧ ସାଧୁମାନେ ଗୁରୁ ରୂପରେ କଳ୍ପିତ ।

ଏମାନେ ଦୃଢ଼ ବୈରାଗ୍ୟ ସମ୍ପନ୍ନ ଓ ବ୍ରହ୍ମନିଷ୍ଠ ହୋଇଥିବା ଆବଶ୍ୟକ । ସେମାନଂଠାରୁ ମହିମା ଧର୍ମର ଦୀକ୍ଷାନୁଷ୍ଠାନ ଗ୍ରହଣ କରାଯାଏ । ଏହି ସିଦ୍ଧ ସାଧୁମାନେ କେବଳ ଧର୍ମୋପଦେଷ୍ଟା ରୂପରେ ଗୁରୁ ଭାବରେ ମାନନୀୟ ଅଟନ୍ତି । ମହିମା ଧର୍ମରେ ବିଷୟୀ ଗୃହସ୍ଥ, ସ୍ୱଧର୍ମ ନିଷ୍ଠଚ୍ୟୁତ, କପଟାଚାରୀ ସନ୍ନ୍ୟାସୀମାନଙ୍କୁ ଗୁରୁ ବା ଉପଦେଶକ ରୂପରେ ଗ୍ରହଣ କରିବା ବା ସମ୍ମାନ କରିବା ନିଷେଧ ।

ଅତଏବ ଜ୍ଞାନ ସ୍ୱରୂପ ବା ଜ୍ଞାନମୟ ପରମାତ୍ମା ହେଉଛନ୍ତି, ସମଗ୍ର ସୃଷ୍ଟିର ଏକମାତ୍ର ଗୁରୁ । କେତେକ ଧର୍ମପନ୍ଥାରେ ଗୁରୁ ଶିଷ୍ୟ ଭାବ ଦର୍ଶାଇ ଗୁରୁମାନେ ଅଭିମାନୀ ହୁଅନ୍ତି, ସେମାନେ ମୂଢ଼ମାନଙ୍କ ନିକଟରେ ନିଜକୁ ତତ୍ତ୍ୱଜ୍ଞ ଭାବେ ଉପସ୍ଥାପିତ କରି ବଡ଼ିମା ଦେଖାନ୍ତି । ମୋକ୍ଷ ସଂପର୍କରେ ଅନେକ ବିଭ୍ରାନ୍ତିକର କଥା କୁହନ୍ତି । ସେମାନଂକର ଉପଦେଶ କଳ୍ପନା ମାତ୍ର କଳ୍ପିତ କଥା କଦାପି ମୁକ୍ତିର ଉପାୟ ବତାଇ ଦେଇ ପାରେନାହିଁ । ସେଭଳି ଗୁରୁ ସର୍ବଦା ବର୍ଜନୀୟ' ।

ମାୟା ସଂସାରରେ ମଣିଷ ହୋଇ ଯିଏ ଜନ୍ମଲାଭ କରିଛି, ସେ ନିଶ୍ଚୟ କିଛି ନା କିଛି ପାପ କରିଛି; ତାହା ଜାଣତରେ ହେଉ ବା ଅଜାଣତରେ ହେଉ । ବିବେକୀ ମଣିଷ ନିଜ କଲା କର୍ମର କୁଫଳ ଓ ସୁଫଳକୁ କଳ୍ପନା କରି ନିଜକୁ ସଂଯତ କରିନିଏ ।

ଗୁରୁ ମହିମା ସ୍ୱାମୀଙ୍କ ଆଦେଶ ଅଛି - 'ଯଦି କୌଣସି ବ୍ୟକ୍ତି କୌଣସି

ପ୍ରକାର ପାପାଚରଣ କରଥା'ନ୍ତି, ତେବେ ସେ ମହିମା ଧର୍ମର ଉପଦେଶ ଗ୍ରହଣ ସମୟରେ ସେହି ପାପକାର୍ଯ୍ୟ ସିଦ୍ଧ ଗୁରୁଙ୍କ ନିକଟରେ ପ୍ରକାଶ କରି ଉପଦେଶ ଗ୍ରହଣ କରିବେ। ଫଳରେ କୃତପାପର କ୍ଷମା ନିମନ୍ତେ ଶରଣ ଦର୍ଶନ ସମୟରେ ସତତଃ ପ୍ରଭୁଙ୍କଠାରେ ପ୍ରାର୍ଥନା କରିବେ। 'ହେ ପ୍ରଭୁ - ମହିମାମୟ ଅଲେଖ ବ୍ରହ୍ମ ! ଆପଣ ବିଶ୍ୱ ବ୍ୟାପକ, ସର୍ବାଶ୍ରୟ, ସର୍ବାନ୍ତର୍ଯ୍ୟାମୀ ଓ ସର୍ବ ଶକ୍ତିମାନ। ଆପଣଙ୍କୁ ମୁଁ ନଜାଣି ପାରି କାୟ ମନୋବାକ୍ୟରେ ଯେଉଁ ସକଳ ପାପକର୍ମ କରିଅଛି, ସେଥିପାଇଁ ମୁଁ ଅନୁତାପ କରୁଛି। ଆପଣଙ୍କ ଅଭୟ ପଦରେ ଶରଣ ପଶୁଛି। ପ୍ରଭୁ! ମୋର ଅଜ୍ଞାନକୃତ ସମସ୍ତ ପାପ ପାଇଁ କ୍ଷମା ଦାନ କରି ପବିତ୍ର କରନ୍ତୁ। ମୁଁ ଯେପରି ପୁନର୍ବାର କୌଣସି ପାପାଚାରରେ ପ୍ରବୃତ୍ତ ନହୁଏ। ସେଥିପାଇଁ ଦୃଢ଼ ପ୍ରତିଜ୍ଞ ହୋଇ ବାରମ୍ବାର ପ୍ରାର୍ଥନା କରୁଛି। ହେ, ଦିବ୍ୟଦ୍ରଷ୍ଟା, ସର୍ବ ସାକ୍ଷୀ ପରମାତ୍ମନ ! ଆପଣଂକଠାରେ ମୋର ପ୍ରତିଜ୍ଞା ଦୃଢ଼ ହୋଇରହୁ। ମୁଁ ଯେପରି ଆଜୀବନ ସୃଷ୍ଟିର କଲ୍ୟାଣ ପଥରେ ଗମନ କରି ପାରିବି। ସେଥି ନିମନ୍ତେ ଆପଣ ମୋତେ ବିଶୁଦ୍ଧାତ୍ମ ଜ୍ଞାନ ଭକ୍ତି ପ୍ରାପ୍ତି କରାନ୍ତୁ' ।

ଏ'କଥାଗୁଡ଼ିକ କେବଳ ଜ୍ୟୋତି ପାଇଁ ମୁଁ କହୁନାହିଁ । ଉପସ୍ଥିତ ଗ୍ରାମବାସୀ ଧର୍ମାତ୍ମାମାନଂକୁ ମୋର ଅନୁରୋଧ, ଏହି ପ୍ରାର୍ଥନାଟିକୁ ନିଶ୍ଚୟ ମନେ ରଖିବେ। ପରଂବ୍ରହ୍ମଂକଠାରେ ପ୍ରଗାଢ଼ ଭକ୍ତି ରଖି ଦରକାର ବେଳେ କ୍ଷମା ପ୍ରାର୍ଥନା କରିବେ' ।

- ଆମର ମହିମା ଧର୍ମରେ ଅହିଂସା, ଯମ ଓ ନିୟମଗୁଡ଼ିକୁ ଶ୍ରୀମଦ୍ ଗୁରୁ ମହିମା ସ୍ୱାମୀ ଖୁବ୍ ଯତ୍ନର ସହିତ ଯୋଗ କରିଦେଇ ଯାଇଛନ୍ତି । ସେ କହିଛନ୍ତି- 'ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ - ଏହି ପଞ୍ଚ ସାଧନାର ନାମ ହେଉଛି - ଯମ । ସେହିପରି ଶୌଚ, ସନ୍ତୋଷ, ତପ, ସ୍ୱାଧ୍ୟାୟ ଓ ଈଶ୍ୱର ପ୍ରଣିଧାନ ଏହି ପଞ୍ଚ ସାଧନାକୁ ଆମେ କହିଥାଉ - ନିୟମ ।

- ଏହି ଯମ ଓ ନିୟମ ଦ୍ୱାରା ହିଁ ଆତ୍ମାର ସଂସ୍କାର କରା ଯାଇପାରେ। ଏହି ସଂସ୍କାର ମାଧ୍ୟମରେ ମଣିଷ ସଂସାର ବନ୍ଧନରୁ ମୁକ୍ତି ପାଇପାରେ ।

- କାୟ, ମନ ଓ ବାକ୍ୟ ଦ୍ୱାରା କୌଣସି ପ୍ରାଣୀକୁ କ୍ଳେଶ ପ୍ରଦାନ ନକରିବା ହେଉଛି - ପ୍ରକୃତ ଅହିଂସା । ଯଜ୍ଞ ବା ବଳି ନାମରେ ପଶୁମାନଂକ ପ୍ରତି ଯେଉଁ ହିଂସା କାର୍ଯ୍ୟ କରାଯାଏ, ତାହା ସର୍ବଥା ବର୍ଜନୀୟ ।

- ମହିମା ଧର୍ମରେ ସତ୍ୟକୁ ସର୍ବୋଚ୍ଚ ସ୍ଥାନ ଦିଆ ଯାଇଥାଏ। ସତ୍ୟର ସ୍ୱରୂପ ହେଉଛନ୍ତି, ପ୍ରଭୁ ପରମାତ୍ମା। ସତ୍ୟ ମାଧ୍ୟମରେ ମଣିଷ ପରମାତ୍ମାଂକର ନିକଟବର୍ତ୍ତୀ

ହୋଇପାରେ । ପୁଣି ଶାସ୍ତ୍ରରେ କୁହା ଯାଇଛି - ବ୍ରହ୍ମ କେବଳ ସତ୍ୟ । ସତ୍ୟ ହିଁ ତପସ୍ୟା । ସତ୍ୟ ପ୍ରାଣୀମାନଂକୁ ସୃଜନ କରେ । ତଥାପି ସତ୍ୟକଥା ଯଦି ଅପ୍ରିୟ୍ ହୋଇଥାଏ, ତେବେ ସେପରି କଥା ଅବାଞ୍ଛନୀୟ୍ । ଏ'କଥା ସତ୍ୟ; କିଂତୁ ପ୍ରିୟ୍‌କଥା ହେଲେ ମଧ୍ୟ, ମିଥ୍ୟା କହିବା ଅନୁଚିତ ।

- ପରଦ୍ରବ୍ୟ ଗ୍ରହଣ ଅନିଚ୍ଛାର ନାମ ଅସ୍ତେୟ୍ । ପରର ଜିନିଷକୁ ଦେଖି ଯେଉଁ ଲାଳସା ଜାତ ହୁଏ, ତାକୁ ତ୍ୟାଗ କରି ନିର୍ଲୋଭ ହେବା ଏତେ ସହଜ କଥା ନୁହେଁ । ତଥାପି ଅଭ୍ୟାସ ଦ୍ୱାରା ଏହା ସମ୍ଭବ ହୋଇଥାଏ ।

- ସନ୍ନ୍ୟାସ ବ୍ରତରେ ବ୍ରହ୍ମଚର୍ଯ୍ୟ ପାଳନକୁ ଗୁରୁତ୍ୱ ଦିଆଯାଏ । ଏହି କାର୍ଯ୍ୟକୁ ସର୍ବୋତ୍ତମ ତପସ୍ୟା ହିସାବରେ ଗଣାଯାଏ । ଯେଉଁମାନେ ଇନ୍ଦ୍ରିୟ୍‌ମାନଂକୁ ଜୟ୍‌କରି ବ୍ରହ୍ମ ପଥରେ ବିଚରଣ କରନ୍ତି, ତାଂକୁ ହିଁ ବ୍ରହ୍ମଚାରୀ କୁହାଯାଏ ।

- କେବଳ ଦେହରକ୍ଷା ପାଇଁ ଯେତିକି ଭୋଗ୍ୟବସ୍ତୁ ଆବଶ୍ୟକ, ତା'ଠାରୁ ଅଧିକ ଗ୍ରହଣ ନକରିବା ହେଉଛି - ଅପରିଗ୍ରହ । ମହିମା ଧର୍ମରେ ଅପରିଗ୍ରହ ଭାବକୁ ପ୍ରାଥମିକତା ଦିଆଯାଏ । ଅଧିକ ଭୋଗ୍ୟବସ୍ତୁରୁ ବିରତ ହୋଇ ଲୋଭକୁ ଦମନ କରି ପାରିଲେ ହିଁ ଜଣେ ନିଜକୁ ପ୍ରକୃତ ସନ୍ନ୍ୟାସୀ ଭାବେ ପରିଚୟ୍ ଦେଇ ପାରିବ ।

- କ୍ଷମା ଓ ଦୟ୍ୱା ଏ' ଦୁଇଟି ଗୁଣ ହେଉଛି - ପ୍ରତ୍ୟେକ ମାନବ ପାଇଁ ପରଂବ୍ରହ୍ମଙ୍କର ଅଶେଷ ଦାନ । ଦୟ୍ୱା ସଦୃଶ ଧର୍ମ, ଇହଲୋକ ପରଲୋକରେ ଦ୍ୱିତୀୟ୍ କିଛି ନାହିଁ ବୋଲି ଭଗବାନ୍ କୃଷ୍ଣ ଗୀତାରେ କହିଛନ୍ତି । ସେହିପରି କ୍ଷମାକୁ କେବଳ ଧର୍ମର ସାର ପଦାର୍ଥ ବୋଲି ଗୀତାରେ କୁହାଯାଇଛି । କ୍ଷମାଦାନ ମାଧ୍ୟମରେ ମଣିଷ ବ୍ରହ୍ମଙ୍କୁ ପ୍ରାପ୍ତ ହୁଏ । ଇହକାଳରେ ଚରମ ସମ୍ମାନର ଅଧିକାରୀ ହୋଇଥାଏ । ଏହି ଗୁଣ ଦୁଇଟିକୁ ଯିଏ ଯେତେ ପରିମାଣରେ ବିକାଶ କରିପାରିବ, ସେତେ ଭଲ' ।

ମଧୁବାବାଂକ ତତ୍ତ୍ୱବାଣୀକୁ ମନଧ୍ୟାନ ଦେଇ ଶୁଣୁଥିବା ସନାତନ କଥା ମଝିରେ କହିଲେ - ' ବାବା ! ମୋ ମନରେ ଏଇଠି ଗୋଟାଏ ସଂଶୟ୍ ଆସୁଛି । ଦୟ୍ୱାକରି ଟିକେ ବୁଝେଇ ଦେବେ' ? ସନାତନଙ୍କ ଆଡ଼କୁ ଚାହିଁ ବାବା ନରମ ଗଳାରେ କହିଲେ - 'ଖୁବ୍ ଭଲ କଥା, ମନରେ ସଂଶୟ୍ ତିଳେ ମାତ୍ର ରଖିବା ଉଚିତ୍ ନୁହେଁ । ଅନ୍ଧପରି କୌଣସି ପରାମର୍ଶକୁ ମଧ୍ୟ ମାନିନେବା ଠିକ୍ ନୁହେଁ । ଯଥାର୍ଥ ଯୁକ୍ତି, ବିଜ୍ଞାନ ସମ୍ମତ ପରାମର୍ଶ ହିଁ କେବଳ ଗ୍ରହଣୀୟ୍ । ପଚାର ବାପା, ତୁମ ମନରେ ସଂଶୟ୍ କଣ' ?

ସନାତନ ଉତ୍ସାହିତ ହୋଇ କହିଲେ - 'ଦେଖନ୍ତୁ ବାବା ! କ୍ଷମା ଓ ଦୟ୍ୱା

ଗୁଣ ଥିବା ଲୋକମାନଂକୁ ଆଜିର ସମାଜ ଅପାରଗ, ଡ଼ରୁଆ ବା ଅକ୍ଷମ ମଣିଷ ହିସାବରେ ବିଚ଼ାର କରି ନେଉଛି । ସେଭଳି କ୍ଷେତ୍ରରେ ...

କଥା ମଝିରୁ ମଧୁବାବା ଛଡ଼େଇ ନେଇ କହିଲେ - 'ସେଭଳି କ୍ଷେତ୍ରରେ ଆମେ କ୍ଷମା ଓ ଦୟା 'ଗୁଣକୁ ଅନାଦର କରିବା କି ଆଦର କରିବା ? ଏଇ ପ୍ରଶ୍ନ ତ ?

- ମୁଁ ଆଗରୁ କହିଛି - 'କ୍ଷମା ଗୁଣ ମଣିଷକୁ ଇହକାଳରେ ସମ୍ମାନ ଦିଏ, କିନ୍ତୁ ବିଳମ୍ବରେ । ସେହିପରି ପରକାଳରେ କ୍ଷମା ଗୁଣ ମଣିଷକୁ ବ୍ରହ୍ମ ପ୍ରାପ୍ତ କରାଏ। କେହି ଆମର ମହତ ଗୁଣକୁ ଯଦି ତା'ର ନିଜ ନିମ୍ନ ଦୃଷ୍ଟିରେ ଦେଖି ଅକ୍ଷମ - ଅଯୋଗ୍ୟ କହେ, ସେଥିରେ ଆମର କିଛି ଯାଏ-ଆସେ ନାହିଁ। ଆମକୁ ସେଭଳି କ୍ଷେତ୍ରରେ ଧୈର୍ଯ୍ୟ ଧରି ରହିବାକୁ ପଡ଼ିବ। କୌଣସି ପରିସ୍ଥିତିରେ କିନ୍ତୁ, କ୍ଷମାର ମହନୀୟତାକୁ ଅସ୍ୱୀକାର କରିବା ନାହିଁ'।

ମୁଣ୍ଡ ହଲେଇ ସନାତନ ବାବାଂକ କଥାକୁ ସମର୍ଥନ କଲେ ।

ମଧୁବାବା ଅନ୍ୟମାନଂକୁ ଚ଼ାହିଁ ପଚ଼ାରିଲେ, 'ଆପଣମାନଂକ ମନରେ ଯଦି କିଛି ପଚ଼ାରିବାର ଥାଏ, ମନଖୋଲି ପଚ଼ାରନ୍ତୁ। ସୁଯୋଗ ତ ସବୁବେଳେ ଆସେନାହିଁ, କିମ୍ବା ଏଭଳି ପରିବେଶ ମଧ୍ୟ ଆମକୁ ସବୁବେଳେ ମିଳେନାହିଁ। ପଚ଼ାରନ୍ତୁ' ।

ଜ୍ୟୋତି ଚ଼ାହିଁଲା, ତା'ର ବୋଉ ମୁହଁକୁ । 'ତୁ ପଚ଼ାରୁଥିଲୁ ପରା - ମହିମା ଧର୍ମରେ ରାତ୍ର ଭୋଜନକୁ କାହିଁକି ବାରଣ କରାଯାଇଛି । ବାବାଂକୁ ପଚ଼ାରୁନୁ ? ଜ୍ୟୋତି ତା' ବୋଉ ଉଦ୍ଦେଶ୍ୟରେ କହିଲା ।

ମଧୁବାବା ମୃଦୁହସି କହିଲେ, 'ହଉ ମା' ମୁଁ ତୋ' ବୋଉର ପ୍ରଶ୍ନଟିକୁ ଶୁଣି ସାରଲିଣି। ଉତ୍ତରଟି କହି ଦେଉଛି ଶୁଣ। ମହିମା ସ୍ୱାମୀଂକ ଆଦେଶ ଅନୁସାରେ ମହିମା ଧର୍ମ ସମାଜରେ ରାତ୍ରି ଭୋଜନକୁ ବାରଣ କରାଯାଇଛି । ଏହା କେବଳ ତାଂକର ଆଦେଶ ନୁହେଁ, ବରଂ ଏହା ପଛରେ ବିଜ୍ଞାନ ସମ୍ମତ କାରଣ ରହିଛି। ଯାହାକୁ ଗୀତା ପୁରାଣରେ ମଧ୍ୟ ସମର୍ଥନ କରାଯାଇଛି।

ପ୍ରଥମ କଥାହେଲା - ରାତ୍ରି ଭୋଜନ ଦ୍ୱାରା ଗଭୀର ନିଦ୍ରା ହୁଏ। ପେଟରେ ଖାଦ୍ୟ ଥିଲେ, ଦୁଃସ୍ୱପ୍ନ ହୁଏ। ଦ୍ୱିତୀୟରେ ବ୍ରାହ୍ମ ମୁହୂର୍ତ୍ତରେ ଜାଗରିତ ହେବାରେ ଏହା ବାଧା ସୃଷ୍ଟି କରିଥାଏ। ଫଳରେ ବ୍ରହ୍ମ ଉପାସନା ଠିକ୍ ସମୟରେ କରିବା ସମ୍ଭବ ହେଇ ପାରେନାହିଁ। ରାତ୍ରି ହେଉଛି, ତାମସ କାଳ। ଏହି ସମୟରେ ଆମେ ଯାହା କିଛି ଭକ୍ଷଣ କରୁ, ତାହା ତାମସ ଆହାରରେ ପରିଣତ ହୋଇଥାଏ। ଫଳରେ ମଣିଷ ମନରେ ରାଜସ

ଓ ତାମସ ଗୁଣ ବୃଦ୍ଧିହୁଏ । ତେଣୁ ମହିମା ଧର୍ମାବଲମ୍ବୀ ଓ ବିବେକୀ ମଣିଷଂକ ପାଇଁ ରାତ୍ରି କାଳର ଆହାର ଓ ଜଳ ପାନକୁ ବାରଣ କରା ଯାଇଛି । ରାତ୍ର ଭୋଜନ ନକଲେ, ମନରେ ସାତ୍ତ୍ୱିକ ଗୁଣ ଉତ୍ପନ୍ନ ହୁଏ, ଯାହା ଧର୍ମ ସାଧନାର ଅନୁକୂଳ ଭାବ ଜାତ କରାଏ । ଭକ୍ତମାନଂକୁ ମନେ ରଖିବାକୁ ହେବ ଯେ, ଦେବତାଙ୍କ ପାଇଁ ଦିବସ ଓ ଅସୁରମାନଙ୍କ ପାଇଁ ରାତ୍ରର ବ୍ୟବସ୍ଥା କରା ଯାଇଛି । କେବଳ ଆହାର ନୁହେଁ, ରାତ୍ର କାଳରେ ବିହାର ବା ଭ୍ରମଣ କରିବା ପାଇଁ ମଧ୍ୟ ଶାସ୍ତ୍ର ବାରଣ କରିଛି । ସେହିପରି ଖାଦ୍ୟ ମିଳିଯିବା ମାତ୍ରେ ତୁରନ୍ତ ଭକ୍ଷଣ କରିବା ଉଚିତ ନୁହେଁ । ପ୍ରଭୁ ପରଂବ୍ରହ୍ମଙ୍କ ପଦରେ ସମର୍ପଣ ନକରି ଖାଦ୍ୟ ପାନୀୟ ଗ୍ରହଣ କରିବା ହେଉଛି ଦୋଷାବହ କାର୍ଯ୍ୟ । ମହିମା ଧର୍ମ ଏହାକୁ ସମ୍ମାନ ଜଣାଇ ଥାଏ । ବ୍ରହ୍ମଙ୍କୁ ସ୍ମରଣ ଓ ସମର୍ପଣ କରିବା ପରେ ଖାଦ୍ୟକୁ ଗ୍ରହଣ କଲେ, ତାହା ପବିତ୍ର ଭାବରେ ଗୃହୀତ ହୁଏ । ମିତାହାରୀ ଅର୍ଥାତ୍ କମ୍ ଏବଂ ଶୁଦ୍ଧ ଖାଦ୍ୟ ଗ୍ରହଣ ଫଳରେ ଚିତ୍ତ ଶୁଦ୍ଧ ହୁଏ । ଭକ୍ତ ପରମାତ୍ମାଙ୍କୁ ଦର୍ଶନ କରିବାକୁ ସମର୍ଥ ହୁଏ ।

- କ'ଣ ମା' ଏବେ ତୋର ବୋଉ ସବୁକଥା ବୁଝି ପାରିଲେ, ନା' ନାହିଁ ? ଆଉ କିଛି ପ୍ରଶ୍ନଥିଲେ ପଚାର' ।

ଅତ୍ୟନ୍ତ ତୃପ୍ତ ନୟନରେ ଜ୍ୟୋତିର ବୋଉ ବାବାଂକୁ ଚାହିଁ କହିଲେ - 'ଆପଣ ତ ସବୁକଥାକୁ ଅତ୍ୟନ୍ତ ସରଳ ଭାବରେ ବୁଝେଇ ଦେଲେ । ଆଉ କ'ଣ ବାକି ରହିଲା ଯେ, ପଚାରିବି' ?

ସନାତନଙ୍କ ପାଖକୁ ଲାଗି ବସିଥିବା ଭକ୍ତ ଜଣଂକ ହାତଯୋଡ଼ି ପଚାରିଲା - 'ବାବା ! ମହିମା ଧର୍ମ ଦୀକ୍ଷିତ ଲୋକମାନେ ବାଛୁରୀ ମୂତ ଓ ଗୋବର ଦ୍ୱାରା ଶୁଚି ହୋଇଥା'ନ୍ତି । ଏହା ପଛରେ କ'ଣ କିଛି କାରଣ ରହିଛି ନା' ଏମିତି' ... ।

- 'ନା ନା ନା - ବିନା କାରଣରେ କୌଣସି ନୀତି ନିୟମ ବନ୍ଧା ହେଇନାହିଁ । ତମେ ଶୁଣିଥିବ, ପୂର୍ବତନ ପ୍ରଧାନମନ୍ତ୍ରୀ ମୋରାରଜୀ ଦେଶାଇ ମୂତ୍ର ଚିକିତ୍ସା ଦ୍ୱାରା ଦୀର୍ଘଜୀବୀ ତଥା ସୁସ୍ଥ ଜୀବନ ଯାପନ କରି ପାରିଥିଲେ । ଏ' ସଂପର୍କରେ ଆମ ଦେଶର ମୁନି-ଋଷି ମାନେ ଯଥେଷ୍ଟ ପୂର୍ବରୁ ଗୋମୟ ଓ ପବିତ୍ରର ଗୁଣକୁ ପରୀକ୍ଷା କରି ସାରିଥିଲେ । ତେଣୁ ମହିମା ଗୋସାଇଁ ମହିମା ଧର୍ମାବଲମ୍ବୀମାନଂକ ପାଇଁ କଠୋର ଭାବରେ ନୀତି ବିଧାନ କରି ଯାଇଛନ୍ତି । ସେମାନେ ରାତ୍ରିର ଶେଷ ପ୍ରହରରେ ଉଠି ପ୍ରଭୁଙ୍କୁ ସ୍ମରଣ କରିବେ । ସ୍ନାନ, ଶୌଚ ଶେଷ କରିବେ । ଅର୍ଥାତ୍ ନିସଂଗ ଛଡ଼ା ବାଛୁରୀର ପବିତ୍ର ଓ

ଗୋମୟ ଅଂଗରେ ମାର୍ଜନ କରି ମୃର୍ତ୍ତିକା ଦ୍ୱାରା ଦନ୍ତ ଧାପନ କରି ସ୍ନାନ କରିବେ । ତା'ପରେ ଗୋମୟ ଓ ଗୋମୂତ୍ର ଏବଂ ଶୁଦ୍ଧ ଜଳକୁ ଏକ ଧୌତ ବା ନୂତନ ମୃର୍ତ୍ତିକା ପାତ୍ର ବା ପତ୍ରର ଚଢ଼ଉପଦୀରେ ଏକତ୍ର କରି ପୂର୍ବାଭିମୁଖରେ ପ୍ରଭୁଙ୍କୁ ସ୍ମରଣ ପୂର୍ବକ ଭୂମିଷ୍ଠ ଶରଣ ହୋଇ ପ୍ରଭୁ ପଦରେଣୁ ସାତଥର ସେଥିରେ ପକାଇ ତାକୁ ପାନ କରିବେ ଏବଂ ଅଂଗରେ ବୋଳି ହେବେ। ଏହାଦ୍ୱାରା ସ୍ଥୂଳ ଶରୀର ଶୌଚ ହୋଇଥାଏ। ଏହାକୁ ଅତି ପବିତ୍ର କୁହାଯାଏ। ସେହିପରି ପ୍ରାତଃ କାଳରେ ସ୍ନାନ ଦ୍ୱାରା ଶରୀରରେ ଥିବା ନଅଟି ଦ୍ୱାର ଶୋଧିତ ହୋଇଥାଏ। ତା'ଦ୍ୱାରା ମନ ଓ ଶରୀର ନିର୍ମଳ ରହେ ।

- ଗୋମୟ ମାର୍ଜନ ପରେ ସ୍ନାନ ଓ ଛଡ଼ା ବାଛୁରୀର ପବିତ୍ର ମୂତ୍ରପାନ କରିବା ଦ୍ୱାରା ଶରୀରରେ ଅନେକ କୀଟାଣୁ ନଷ୍ଟ ହୋଇଥା'ନ୍ତି। କୌଣସି ଚର୍ମରୋଗ ଆକ୍ରମଣ କରି ପାରେନାହିଁ। ଶରୀରରେ ଥିବା ସକଳ ଦୋଷ ଦୂର ହୁଏ। ତେଣୁ ମହିମା ଧର୍ମ ସମାଜ ଏହି ପବିତ୍ର ଗୋମୟ ଓ ଗୋମୂତ୍ରକୁ ଶୁଚି କାର୍ଯ୍ୟରେ ପ୍ରଧାନ ଉପାଦାନ ରୂପରେ ଗ୍ରହଣ କରି ନେଇଛି । ଗୋମୂତ୍ର ଓ ଗୋମୟ ବିଷୟରେ କୌଣସି ପ୍ରକାର ସନ୍ଦେହ ନାହିଁ। ବରଂ ଗୋମୂତ୍ର ପାନ ଦ୍ୱାରା ଶରୀରରେ ପୁଷ୍ଟି ସାଧନ ହୋଇଥାଏ' ।

ମଧୁବାବା ଏକା ନିଶ୍ୱାସରେ ଅତ୍ୟନ୍ତ ଦୃଢ଼ତାର ସହିତ ଗୋମୟ ଓ ଗୋମୂତ୍ରର ମହତ୍ୱ ସଂପର୍କରେ କହି ଚାଲିଥିଲେ।

ସନାତନ ପଚାରିଲେ - 'ବାବା ! ହିନ୍ଦୁ ଧର୍ମରେ ଗାଈକୁ ମାତା ବୋଲି କୁହାଯାଏ। ସେଇଥି ପାଇଁ ତାକୁ ଏତେ ମର୍ଯ୍ୟାଦା ଦିଆ ଯାଇଛି କି' ?

- ମଧୁବାବା କହିଲେ ,'ଏ ସଂପର୍କରେ ସୁନ୍ଦର କାହାଣୀଟିଏ ମହାଭାରତରେ ଅଛି, କହୁଛି ଶୁଣ । ଯୁଧିଷ୍ଠିର ମହାରାଜ ଭୀଷ୍ମଙ୍କୁ ପଚାରିଲେ, 'ଗୋମୟ ଓ ଗୋମୂତ୍ର ଶ୍ରୀଯୁକ୍ତ ହେବାର କାରଣ କ'ଣ ? ଭୀଷ୍ମ ତାଂକୁ ବୁଝାଇବାକୁ ଯାଇ କହିଲେ, 'ଥରେ ଜଗତ ଜନନୀ ଲକ୍ଷ୍ମୀଦେବୀ ମନୋହର ବେଶ ଧାରଣ କରି ଗୋରୁ ଗୋଠରେ ପଶିଲେ। ଗୋରୁମାନେ ତାଂକର ମନୋହର ରୂପ ଦେଖି ଆଶ୍ଚର୍ଯ୍ୟ ହେଲେ। ଗୋଠ ଭିତରେ ପଶିବାର କାରଣ ପଚାରିଲେ। ମାତା ଲକ୍ଷ୍ମୀ କହିଲେ - 'ମୁଁ ତୁମ ଶରୀରର କୌଣସି ଏକ ସ୍ଥାନରେ ରହିବାକୁ ଇଚ୍ଛା କରୁଛି। କାରଣ, ମୁଁ ଜାଣେ ତୁମେମାନେ ହେଉଛ, ବ୍ରହ୍ମାଙ୍କର ଅତିପ୍ରିୟ ପ୍ରାଣୀ । ତୁମେମାନେ ତପସ୍ୟା ଦ୍ୱାରା ତାଂକୁ ସନ୍ତୁଷ୍ଟ କରି ପାରିଛ। ତୁମ ପରି ତ୍ୟାଗୀ, ତପସ୍ୱୀ ଓ ସରଳ ପ୍ରାଣୀ ସୃଷ୍ଟିରେ ବିରଳ। ତେଣୁ ତୁମର ଶରୀର ଏକ ପବିତ୍ର ସ୍ଥାନ। ବ୍ରହ୍ମାଙ୍କ ନିର୍ଦ୍ଦେଶରେ ତୁମେ କଲ୍ୟାଣମୟୀ ଓ ଯଶସ୍ୱିନୀ ହୋଇପାରିଛ। ଲକ୍ଷ୍ମୀଙ୍କର ପରିଚୟ

ପାଇ ଗାଈମାନେ କହିଲେ, 'ମାତା ! ଆମର ଶରୀର ବ୍ରହ୍ମାଙ୍କ ଦ୍ୱାରା ଦେବ ଉପଯୋଗୀ ହୋଇ ପାରିଛି, ଆପଣଂକ ଇଛାନୁସାରେ ଯେଉଁଠି ପାରୁଛନ୍ତି, ସେଇଠି ବାସ କରନ୍ତୁ ।'

ମାତାଲକ୍ଷ୍ମୀ ନମ୍ର ଭାବରେ କହିଲେ - 'ମୁଁ ତ କେବଳ ତୁମମାନଂକ ଗୋମୟ୍ ଓ ଗୋମୂତ୍ରରେ ବାସ କରିବାକୁ ଚ଼ାହେଁ ! କାରଣ ଏହା ସକଳ ଶ୍ରେଣୀର ମଣିଷଙ୍କର କାର୍ଯ୍ୟରେ ଲାଗି ପାରିବ' ।

ସେହିଦିନଠାରୁ ଗାଈ ତିନି ଗୁଣରେ ଭୂଷିତା ହେଲେ । ଏ'କଥା ଉପନିଷଦ୍‌ରେ ମଧ୍ୟ ଲେଖାଅଛି । ପ୍ରାଚ଼ୀନ କାଳରେ ମୁନି ଋଷିମାନେ ଗୋମୂତ୍ର ଓ ଗୋମୟ୍ ଆପ୍ୟାୟନ କରି ଯୋଗ ମାର୍ଗରେ ଅବସ୍ଥାନ କରୁଥିଲେ । ମହିମା ଧର୍ମରେ ସ୍ନାନ ଶୁଚ଼ି ଓ ଶୁଦ୍ଧି କାର୍ଯ୍ୟରେ ମଧ୍ୟ ତାହା ହିଁ କରା ଯାଇଥାଏ ।

- କ'ଣ ଏବେ ବୁଝି ପାରିଲ ସନାତନ' ?

ବାବାଂକ ତୁଣ୍ଡରୁ କଥା ଶେଷ ନହେଉଣୁ, ଜ୍ୟୋତି ପଚ଼ାରିଲା- 'ବାବା ! ମଣିଷକୁ ସନ୍ତୋଷ ଆଉ ଶାନ୍ତି କେମିତି, କେଉଁଠୁ ମିଳେ, ସେ ସଂପର୍କରେ ମହିମା ଗୋସେଇଁଙ୍କର କ'ଣ ପରାମର୍ଶ ଅଛି । ଆମକୁ ଟିକେ କୁହନ୍ତୁ' ।

ବାବା ଟିକେ ଦୀର୍ଘଶ୍ୱାସ ପକାଇ ପୁଣି କହିଲେ, 'ମା'ଜ୍ୟୋତି ! ମୁଁ ତୋ'ଠାରୁ ହିଁ ଏଭଳି ପ୍ରଶ୍ନ ଆଶା କରୁଥିଲି । ଆଜିର କାର୍ଯ୍ୟକ୍ରମ ତୋ' ପାଇଁ ଉଦ୍ଦିଷ୍ଟ ଥିଲା । ତୋ' ପ୍ରଶ୍ନର ଉତ୍ତର ପରେ କାର୍ଯ୍ୟକ୍ରମର ସମାପ୍ତି କରିବା ।

- ହଁ, ମନେରଖ ! ଯେ କୌଣସି ଅବସ୍ଥାରେ ଅସୁଖୀ ନହେବା ବା ଶାନ୍ତିରେ ରହିବାକୁ ହିଁ ସନ୍ତୋଷ କୁହାଯାଏ । ଅଧିକ ଆଶା ହିଁ ଅସନ୍ତୋଷର କାରଣ ହୁଏ । ମାୟା ମୋହରେ ଜଡ଼ିତ ହୋଇ ମଣିଷ ସର୍ବଦା ଦୁଃଖକୁ ନିମନ୍ତ୍ରଣ କରେ ! ଫଳରେ ତାକୁ ଅଶାନ୍ତି ମିଳେ । ଆପଣା ଅବସ୍ଥାରେ ପ୍ରାଣୀ ସନ୍ତୁଷ୍ଟ ନରହିଲେ, ଅସନ୍ତୋଷ ରୂପୀ ହୁତାସନ ଦ୍ୱାରା ସେ ଦଗ୍ଧୀଭୂତ ହୋଇଥାଏ ।

ଏହି ସଂସାରରେ ପ୍ରତ୍ୟେକ ମଣିଷ ଲୋଭ ରୂପକ ଜାଲରେ ଛନ୍ଦି ହୋଇ ରହିଥା'ନ୍ତି । କେବଳ ସନ୍ତୁଷ୍ଟ, ବିବେକୀ ମଣିଷ ଓ ସାଧୁ-ସନ୍ଥମାନେ ସେହି ଲୋଭରୂପକ ରାକ୍ଷସକୁ ପରାସ୍ତ କରି ବିମୁକ୍ତ ଅବସ୍ଥାରେ ଶାନ୍ତି ଓ ସନ୍ତୋଷର ଜୀବନ୍ତ ପ୍ରତିମୂର୍ତ୍ତି ସ୍ୱରୂପରେ ବିଦ୍ୟମାନ ହୁଅନ୍ତି । କିଂତୁ ବିପୁଳ ସଂପତ୍ତିର ଅଧିକାରୀ ଧନୀକ ଶ୍ରେଣୀର ମଣିଷମାନେ ଭୋଗ ବିଳାସରେ ମାତି ରହିଥିଲେ ବି ତିଳେମାତ୍ର ଶାନ୍ତି ବା ସନ୍ତୋଷ ଲାଭ କରି ପାରନ୍ତି ନାହିଁ । ତେଣୁ ସନ୍ନ୍ୟାସୀମାନଂକୁ ଜନପଦରେ ମହାରାଜା ବୋଲି ସଂବୋଧନ

କରାଯାଏ । ସେମାନେ ମନ ଓ ଇନ୍ଦ୍ରିୟ ଅର୍ଥାତ୍ ଆଶା ରୂପକ ଶତ୍ରୁକୁ ପରାଜିତ କରି ସାରିଥା'ନ୍ତି ।

- ମଣିଷ ସୁଖ-ଦୁଃଖ, ଲାଭ-କ୍ଷତି, ମଂଗଳ-ଅମଂଗଳ ଓ ଜୀବନ-ମରଣ ପର୍ଯ୍ୟାୟ ଦେଇ ଗତି କରେ । ଯେଉଁମାନେ ଧୀର, ବିବେକୀ ଓ ସାଧୁ, ସେମାନେ ଏଥିରେ ବିଭୋର ହୁଅନ୍ତି ନାହିଁ । ଶୋକ କି ଦୁଃଖ କରନ୍ତି ନାହିଁ । ସେହିପରି ପ୍ରାପ୍ତିରେ ମଧ୍ୟ ତାଂକର ଆନନ୍ଦ କିମ୍ବା ଉଲ୍ଲାସ ନଥାଏ । ସୁଖ-ଦୁଃଖରେ ସମଜ୍ଞାନୀ ହୋଇ ରହିବାକୁ ଗୀତାରେ ଯାହା ପରାମର୍ଶ ଦିଆଯାଇଛି, ତାକୁ ମଧ୍ୟ ମହିମା ଧର୍ମ ସମାଜରେ ମାନ୍ୟତା ମିଳିଛି । ମହିମା ଧର୍ମ ହେଉଛି, ସତ୍ୟ ସନାତନ ଧର୍ମ । ସୃଷ୍ଟିର ମଂଗଳ କାମନା ହେଉଛି, ଏହାର ମୂଳ ଉଦ୍ଦେଶ୍ୟ । ସୃଷ୍ଟିକର୍ତ୍ତା ପରଂବ୍ରହ୍ମଙ୍କ ନିକଟତର ହେବା ଓ ମୋକ୍ଷପ୍ରାପ୍ତି ହେବା ନିମନ୍ତେ ଅନେକ ନୀତି ନିୟମ ବନ୍ଧା ହୋଇ ରହିଛି । ଆପଣମାନେ ମଝିରେ ମଝିରେ ଏହିଭଳି ଭକ୍ତ ସଭାର ଆୟୋଜନ କଲେ, ଆମର ଅନ୍ୟ ସାଧୁମାନଂକୁ ଡକାଇ ଆଣିବା । ତାଂକଠାରୁ ଆହୁରି ଅନେକ ଭଲ, ମଂଗଳ କାରୀ କଥାମାନ ଶୁଣି ଆପଣମାନେ ମନ ଓ ଶରୀରକୁ ଶୁଦ୍ଧ କରି ପାରିବେ ।

- ହଁ ମା' ଜ୍ୟୋତି ! ତୁ ଶାଶୂଘରକୁ ଗଲେ, ଆମକୁ ଭୁଲି ଯିବୁନାହିଁ । ସେ ଗାଆଁରେ ବି ଗୋଟାଏ କାର୍ଯ୍ୟକ୍ରମର ଆୟୋଜନ କରିବୁ । ମୁଁ ତ ନିଶ୍ଚୟ ଯିବି । ଅନ୍ୟମାନଂକୁ ଡାକି ନେଇଯିବା ଦାୟିତ୍ୱ ମୋର ।

ଜ୍ୟୋତି ବାବାଂକ କଥା ଶୁଣି ଲାଜେଇ ଗଲା । ମନ ଭିତରେ ବାବାଂକ କଥାକୁ ସେ ସମର୍ଥନ କରୁଥିଲେ ବି ଅନିଶ୍ଚିତ ଭବିଷ୍ୟତକୁ ଦୃଷ୍ଟିରେ ରଖି ଦୃଢ଼ତାର ସହିତ ହଁ କରି ପାରୁ ନଥିଲା ବାବା ତା' ମନ କଥା ବୁଝିଗଲେ । କହିଲେ - 'ହଉ ମା' ଆଜିର କାର୍ଯ୍ୟକ୍ରମ ଏଇଠି ରହୁ । ତେଣେ ଗୁରୁଦେବ ମୋତେ ଅପେକ୍ଷା କରି ରହିଥିବେ' ।

ଶେଷରେ ସମସ୍ତେ ଠିଆ ହୋଇ ଶୂନ୍ୟକୁ ଚାହିଁ ଦୁଇହାତ ଟେକି ଗୁରୁ ମହିମା ଅଲେଖଙ୍କୁ ସ୍ମରଣ କଲେ । ସନାତନ ଓ ଗ୍ରାମବାସୀ ବାବାଂକୁ ନେଇ ଆଶ୍ରମରେ ଛାଡ଼ି ଦେଇ ଆସିଲେ ।





ଗତକାଲି ମଧୁବାବାଂକ ପ୍ରବଚନ ଜ୍ୟୋତିକୁ ବହୁତ ଭଲ ଲାଗିଥିଲା । ସେ ପୂର୍ବରୁ ଯଦିଓ ମହିମା ଧର୍ମର ବିଧି-ବିଧାନ ସଂପର୍କରେ ଅନେକ କିଛି ଜାଣିଥିଲା । ତଥାପି ସେ ବିଧି-ବିଧାନରେ ଏତେ ଗୁଢ଼ ତତ୍ତ୍ୱ ଓ ବିଜ୍ଞାନ ସମ୍ମତ କାରଣ ରହିଛି, ସେ କଥା ଜାଣି ନଥିଲା । ବାବା ବିଦାୟ ନେବା ପରେ ଜ୍ୟୋତିର ବୋଉ ବାବାଂକୁ ଅନେକ ପ୍ରଶଂସା କଲେ । ତାଂକର ପାଣ୍ଡିତ୍ୟ ଓ ଗୀତାଜ୍ଞାନ ନିକଟରେ ସେ ନିଜର ମଥାକୁ ନୁଆଁଇ ଦେଲେ ।

ଆଜି ଜ୍ୟୋତିର ପିଉସୀମା' ହୀରା, ବଣସିଂହ ଗାଆଁରୁ ଆସିବ ।

ବାହାଘର ଖବର ଶୁଣିବା ମାତ୍ରେ ସେ କାନ୍ଦି କାନ୍ଦି କହିଥିଲା, 'ଭାଇ ! ତମର ଅବସ୍ଥା ଯାହା , ମୋର ବି ସେଇଆ । ପୁଅଟିଏ ଥିଲେ, କୁଳରକ୍ଷା ହୋଇଥା'ନ୍ତା । କିନ୍ତୁ ଭଗବାନଂକର ଇଚ୍ଛା ଭିନ୍ନ । ମୋର ଝିଅଟି ତମର ଝିଅ ଜନ୍ମ ହେବାର ମାସକ ପରେ ଜନ୍ମ ହୋଇଥିଲା । ଦେଖ ତା'ର ଭାଗ୍ୟ, ବାହା ହେବାର ବର୍ଷକ ଭିତରେ ଆର ପାରିକୁ ଚାଲିଗଲା । ବିଚାରି ସଂସାର ସୁଖଟିକେ ଭୋଗ କରି ପାରିଲା ନାହିଁ । ଦୁଃଖିନୀ ଭଉଣୀ ଆଉ କଥା କହି ନପାରି ସେ ଭୋ ଭୋ ହୋଇ କାନ୍ଦି ଉଠିଲା - ସନାତନଂକୁ ଜାବୋଡ଼ି ଧରି ।

ସାନ୍ତ୍ୱନା ଦେଇ ସନାତନ ବୁଝାଇ ଥିଲେ, ହୀରା ! ତୁ ଆଉ କାନ୍ଦନା । ଇଏ' ସବୁ ଆମର ପୂର୍ବ ଜନ୍ମାର୍ଜିତ କର୍ମର ଫଳ । ଏଇ ଜ୍ୟୋତି ହିଁ ଆମ ଭାଇ-ଭଉଣୀ ଦି' ଜଣଙ୍କର ସବୁକିଛି । ତୁ ମୋ ସାଂଗରେ ଚାଲ । ଜ୍ୟୋତିର ବାହାଘର କାମରେ ଲାଗି ରହିଲେ, ତୋର ସେ ସବୁ ଦୁଃଖ ଦୂରେଇ ଯିବ' ।

ସେଦିନ ଭାଇ ସାଂଗରେ ସେ ଆସି ପାରି ନଥିଲା । ଆଜି ପୁତୁରା ସାଂଗରେ ସିଏ ଆସିବ । ଖରା ଲେଉଟିଲାଣି । ଜ୍ୟୋତି ଦାଣ୍ଡ ଦୁଆରକୁ ଯାଇ ଦେଖେ ତ ହୀରା ଅପା ଆସି ପହଞ୍ଚି ଗଲାଣି । ଜ୍ୟୋତିକୁ ଜାବୋଡ଼ି ଧରି ଖୁବ୍ ଆବେଗଭରା କଣ୍ଠରେ ପଦ ଯୋଡ଼ି ଯୋଡ଼ି କାନ୍ଦିବା ଆରମ୍ଭ କରିଦେଲା । ଜ୍ୟୋତି ତାକୁ ଘର ଭିତରକୁ ନେଇଗଲା ।

ଜ୍ୟୋତି ଜାଣେଁ, ହୀରା ଅପା ତା' ଝିଅକୁ ହରେଇବା ଦିନରୁ ଦୁଃଖରେ ଭାଂଗି ପଡ଼ିଛି । ତାକୁ ଦେଖି ପକେଇଲେ, ଅପାର ସବୁ ଦୁଃଖ ଦୂରେଇ ଯାଏ । କିନ୍ତୁ ଏମିତି କେତେଦିନ ଚାଲିବ ? ଆଉ କେଇଟା ଦିନ ପରେ ତ ସିଏ ନିଜେ ଶାଶୂଘରକୁ ଚାଲିଯିବ। ଥରେ ବାପଘରୁ ଶାଶୂଘରକୁ ଚାଲିଗଲେ, ସିଏ ଆଉ ଥରେ ଅପାକୁ ଦେଖା କରି ପାରିବ ବୋଲି ନିଶ୍ଚିତ ଭାବରେ କହି ହେବନାହିଁ । ତା' ଝିଅ ମଲା ଦିନରୁ ଅପା ଅଧିକାଂଶ ଦିନ ଜ୍ୟୋତି ପାଖରେ ରହି ସାନ୍ତ୍ୱନା ପାଏ । ନଚେତ୍ ଜ୍ୟୋତି ଯାଇ ତାଙ୍କ ଘରେ ବୁଲି ଆସେ । ହୀରା ଅପାର ଦୁଃଖକୁ ଦେଖି ଦେଖି ପିଉସା ଏକ ପ୍ରକାର ମୂକ ପାଲଟି ଯାଇଛନ୍ତି । ସିଏ ବସିଛନ୍ତି ତ ବସିଛନ୍ତି । କେତେ କ'ଣ ଭାବି ଚାଲନ୍ତି, ତାଙ୍କୁ ହିଁ ଜଣା । କୌଣସି ଜାଗାକୁ ଯିବାରେ, କିମ୍ବା କୌଣସି କାମ କରିବାରେ ତାଂକର ଆଗ୍ରହ ନାହିଁ । ତାଂକ କଥା ଛାଡ଼ ।

ଜ୍ୟୋତି ବେଶ୍ ମନଭରି ହୀରା ଅପାକୁ ଚାହିଁ ଏ'ସବୁ କଥା ମନେ ମନେ ଭାବୁଥିଲା। ତା'ମନରେ ପଶିଲା, ଯଦି ହୀରା ଅପା ମହିମା ଧର୍ମରେ ଦୀକ୍ଷିତା ହେଇ ଯାଆନ୍ତା, ତେବେ ସେ ସ୍ଥାୟୀ ଭାବରେ ଶାନ୍ତି ଆଉ ସନ୍ତୋଷ ପାଇ ପାରନ୍ତା । କିନ୍ତୁ ପିଉସା କ'ଣ ଏଥିରେ ରାଜି ହେବେ?

- ତଥାପି ସେ ମନର କଥାକୁ ଆଉ ବେଶି ସମୟ ଚାପି ରଖି ପାରିଲା ନାହିଁ । ତା' ହାତକୁ ଧରି ଜ୍ୟୋତି କହିଲା- 'ଅପା! ତୁ ମୋତେ କେତେ ଭଲ ପାଉ, ସେ କଥା କେବଳ ମୁଁ ଜାଣେ । ମୋତେ ଛାଡ଼ି ତୁ କେମିତି ଯନ୍ତ୍ରଣା ପାଇବୁ, ସେ କଥା ମୁଁ ଅନୁଭବ କରି ପାରୁଛି । ଯଦି ଉଚିତ୍ ମନେ କରିବୁ, ତେବେ ପିଉସାଙ୍କ ସହିତ ପରାମର୍ଶ କରି ତୁ ମହିମା ଧର୍ମରେ ଦୀକ୍ଷିତା ହୋଇଯା' । ଦେଖିବୁ, ପରଂବ୍ରହ୍ମ ପରମ ପିତାଂକ ନିକଟରେ ତୁ ନିଜକୁ ସମର୍ପଣ କରି ଦେଇ ଖୁବ୍ ଶାନ୍ତିରେ ରହି ପାରିବୁ । ମରି ଯାଇଥିବା ଝିଅ କିମ୍ବା ମୋ ବିଷୟ ତୋ'ର ମୋଟେ ମନେ ପଡ଼ିବ ନାହିଁ । ଏ'ସଂସାରଟି ତୋତେ ଅମୃତମୟ, ଆନନ୍ଦ ଦାୟକ ଏବଂ ସହଜ-ସରଳ ମନେ ହେବ । ଯଦି ପୀଉସା ନିଜେ ଗୃହସ୍ଥ ଭକ୍ତ ହୁଅନ୍ତି, ତେବେ ତ ଖୁବ୍ ଭଲକଥା । କିନ୍ତୁ ଏ'ସବୁ ତୋ' ଉପରେ ନିର୍ଭର କରେ । ମୁଁ ତୋତେ ଏଥିପାଇଁ ଜୋର କରୁନାହିଁ, କିମ୍ବା ବାଧ୍ୟ କରୁନାହିଁ । କେବଳ ତୋ'ର ଭବିଷ୍ୟତକୁ ଦୃଷ୍ଟିରେ ରଖି ଏ'କଥା କହୁଛି ।'

ହୀରା ଜାଣେ, ଜ୍ୟୋତି ପିଲାଟି ଦିନରୁ ଆଶ୍ରମକୁ ଯାଏ, ବାବାମାନଂକର ସେବା କରେ । ମହିମା ଧର୍ମ ଉପରେ ତା'ର ଯଥେଷ୍ଟ ଜ୍ଞାନଅଛି । ପାଠ ବି ଭଲ ପଢ଼େ । ତାକୁ ସାଧୁ ସନ୍ନ୍ୟାସୀମାନେ ବେଶ୍ ଭଲ ପାଆନ୍ତି । ସେ ଜଣେ ପ୍ରଗତିଶୀଳା ଯୁବତୀ । ତା'

କଥାର ମଧ୍ୟ ଓଜନ ଅଛି । ସେ ସବୁବେଳେ ବୁଝି ବିଚାରି କଥା କହେ ।

ଜ୍ୟୋତିର କଥା ତାକୁ ଅମୃତ ଭଳି ଲାଗୁଥିଲା । ସତରେ ପ୍ରତ୍ୟେକ ଦିନ ଦୁଃଖ ଅସନ୍ତୋଷ ଓ ଅଶାନ୍ତିରେ ଜଳି ପୋଡ଼ି ହେଇ ମରିବା ଅପେକ୍ଷା, ପ୍ରଭୁଙ୍କ ଶରଣ ପଶି ଜଗତର ମଂଗଳ ତଥା ନିଜର ମୋକ୍ଷ କାମନା କରିବା ବରଂ ଶତ ଗୁଣେ ଭଲ । ଜ୍ୟୋତି ଯାହା କହୁଛି, ପ୍ରକୃତରେ ଭଗବାନ ହିଁ, ତା'ତୁଣ୍ଡରେ ଏ'କଥା ସବୁ ଆମର ମଂଗଳ ପାଇଁ କୁହାଇ ଦେଉଛନ୍ତି, ହୀରା ମନକୁ ମନ ଏ'କଥା ଚିନ୍ତାକଲା ।

ଅପାର ଶୁଣିବା ଆଗ୍ରହ ଏବଂ ମୁଖର ଔଜ୍ଜ୍ୱଲ୍ୟତାକୁ ଲକ୍ଷ୍ୟ କରି ଜ୍ୟୋତି ଜାଣି ପାରିଲା, ସେ ତା' ପ୍ରସ୍ତାବକୁ ଆନନ୍ଦର ସହିତ ଗ୍ରହଣ କରି ପାରିଛି । ସେ ଦୁଃଖକୁ ପଛକୁ ଫୋପାଡ଼ି ଦେଇ ସୁଖର ସଂଧାନରେ ପରଂବ୍ରହ୍ମଙ୍କ ଆଡ଼କୁ ମୁହାଁଉଛି । ତା'ପାଟିରୁ ବାହାରି ପଡ଼ିଲା-'ଅପା! ତୋ'ର କିଛି ଚିନ୍ତା କରିବା ଦରକାର ନାହିଁ । ତୋତେ ଆଜି ଆଶ୍ରମକୁ ନେଇ ନିରାକାର ବାବାଙ୍କ ସହିତ ମୁଁ ଦେଖା କରାଇ ଦେବି । ହେବତ ଆଶ୍ରମରେ ଥିବା ଦୀକ୍ଷିତା ମହିଳାମାନଙ୍କ ସହିତ ତୋତେ ଭେଟେଇ ଦେବି । ତୁ ତାଂକର ଭଲ ମନ୍ଦ କଥା ପଚାରି ବୁଝିବୁ । ତୋତେ ଯଦି ଦୀକ୍ଷିତାମାନଙ୍କ କାର୍ଯ୍ୟ କଳାପ ଭଲ ଲାଗେ, ତେବେ ତୁ ଯାଇ ଆଗେଇବୁ । ବାହାଘରକ ପୀଉସା ତ ଆସିବେ । ମୁଁ ତାଂକ ସାଂଗରେ କଥା ହେବି । ନିରାକାର ବାବାଂକ ସହିତ ପରିଚୟ କରେଇ ଦେବି । ମୁଁ ଭାବୁଛି, ପୀଉସା ମୋ କଥାରେ ରାଜି ହେଇଯିବେ, ତମ ଦି'ଜଣଙ୍କର ଦୁଃଖ ଦୂରେଇ ଯିବ । ସେ ମଧ୍ୟ ସୁଖର ସଂଧାନରେ ବ୍ରତୀ ହେଇ ପାରିବେ' ।

ଜ୍ୟୋତିର ସବୁକଥା ଶୁଣି ହୀରା ଅପା ସେତେବେଳେ ମୌନ ହେଇ ଯାଇଥିଲା ।

ଶାସ୍ତ୍ର କହେ- ମୌନଂ ସମ୍ମତି ଲକ୍ଷ୍ମଣମ୍ । ରାତିରେ ହୀରା ଅପା ଜ୍ୟୋତି ପାଖରେ ଶୋଇଲା ।

ସାରା ରାତି ସେମାନେ ମହିମା ଗୋସାଇଁଙ୍କ ମହିମା ବିଷୟରେ ଆଲୋଚନା କଲେ । ନିରାକାର ବାବା କେମିତି ସବୁ ଭବିଷ୍ୟତ କଥା ସତ କହି ପାରନ୍ତି । ତାଂକ ମୁହଁରୁ ବାହାରିବା କଥା କେବେ ଅନ୍ୟଥା ହୁଏନାହିଁ । ସେ କେମିତି ଜଣେ ଦିବ୍ୟଦ୍ରଷ୍ଟା ଏବଂ ମଧୁବାବା ତ ଜ୍ଞାନର ଭଣ୍ଡାର, ଏ'ସଂପର୍କରେ ତା'ର ଅନୁଭବ ଓ ଅନୁଭୂତି ସଂପର୍କରେ ହୀରା ଅପାକୁ କହିଲା । ଦୀକ୍ଷା ଗ୍ରହଣ କରିଥିବା ମହିଳାମାନେ କିଭଳି ଶୃଙ୍ଖଳିତ ଜୀବନ ବିତାଉଛନ୍ତି । ସେମାନଙ୍କୁ କେମିତି ଦୀକ୍ଷା ଦିଆଯାଏ, ସେସବୁ କଥା ହୀରା ଅପା ତାକୁ ପଚାରି ବୁଝିଲା ।

ଜ୍ୟୋତି ଅନୁମାନ କରିନେଲା, ହୀରା ଅପା ମହିମା ଧର୍ମରେ ଦୀକ୍ଷିତା ହେବାକୁ

ବଡ଼ ବ୍ୟାକୁଳ ହେଇ ପଡ଼ିଛି । ସେ କହିଲା - ଅପା ! କାଲି ବଡ଼ି ସକାଳୁ ଗାଧୋଇ ପଡ଼ି ମଠକୁ ଯିବା । ତୁ ଆଗ ନିରାକାରବାବାଂକୁ ଦର୍ଶନ କରି ଆଶୀର୍ବାଦ ଗ୍ରହଣ କରିବୁ । ତା'ପରେ ପିଉସାଙ୍କ ସହିତ କଥାବାର୍ତ୍ତା କରି ତାଂକର ମତାମତ ନେଇ ତୁ ଦୀକ୍ଷା ଗ୍ରହଣ କରିବୁ । ଖାଲି ଦୀକ୍ଷା ଗ୍ରହଣ କରିଦେଲେ, ମଣିଷକୁ ମୁକ୍ତି ମିଳିଯାଏ ନାହିଁ, କିମ୍ବା ତା' ହାତ ପାହାନ୍ତାରେ ସବୁ ସୁଖ ଶାନ୍ତି ଆସି ପହଞ୍ଚି ଯାଏନାହିଁ । ଦୀକ୍ଷା ଗ୍ରହଣ କଲା ପରେ ପରେ ଅନେକ ଗୁଡ଼ିଏ ନୀତି ନିୟମ ପାଳନ କରିବାକୁ ହେବ । ସାଧାରଣ ମଣିଷଂକ ତୁଳନାରେ ଅଧିକ ଦୃଢ଼ ମନ ନେଇ, ନୀତିରକ୍ଷା ପାଇଁ କଠୋର ହେବାକୁ ପଡ଼ିବ । ମନରୁ ସମସ୍ତ ବିକାର ଛଡ଼େଇ ସରଳ ତଥା ତ୍ୟାଗପୂତ ଜୀବନ ଯାପନ କରିବାକୁ ପଡ଼ିବ । ଏଥିପାଇଁ ତୁ ନିଜେ ଆଗ ପ୍ରସ୍ତୁତ ଅଛୁତ ?'

ହୀରା ଅପାକୁ ଜ୍ୟୋତିର ସବୁକଥା କେବଳ ଭଲ ଲାଗୁ ନଥିଲା, ସେ ତା'ର ପ୍ରତ୍ୟେକ ଶବ୍ଦକୁ, ଗୁରୁବାକ୍ୟ ଭାବରେ ଗ୍ରହଣ କରି ନେଉଥିଲା । ନିରାକାର ବାବାଂକୁ ଦର୍ଶନ କରିବାକୁ ତା' ମନ ବ୍ୟାକୁଳ ହେଇ ଉଠିଲା । ରାତି ପାହାନ୍ତାରୁ ଉଠି ଗାଧୋଇ ପାଧୋଇ ଧୂଆ ଲୁଗା ଖଣ୍ଡେ ବଦଳେଇ ପକେଇ ଜ୍ୟୋତିକୁ ସାଂଗରେ ଧରି ମଠରେ ହାଜର ହେଲା ।

ସେଠାରେ ମହିମା ଧର୍ମାବଲମ୍ବୀମାନଂକର ପ୍ରାର୍ଥନା, ସାଷ୍ଟାଙ୍ଗ ଦର୍ଶନ, ତିନିତାଳି ଓ ପ୍ରଣାମ ଦେଖି ହୀରା ଅପାର ମନ ତରଳିଗଲା । ସେ ଦୁଇ ହାତ ଯୋଡ଼ି ମହିମା ଗୋସାଇଁଙ୍କୁ ବ୍ୟାକୁଳ ମନରେ ଶାନ୍ତିପାଇଁ ପ୍ରାର୍ଥନା କଲା । ଜ୍ୟୋତି ତା'ର ପୂର୍ବ ଅଭ୍ୟାସ ଅନୁସାରେ ଝାଡୁମାରି ମଠକୁ ସଫା ସୁତର କରି ଚାଲିଲା । ନିରାକାର ବାବାଂକୁ ଦର୍ଶନ କରି ସେଦିନ ହୀରା ଅପା କିଛି ଗୋଟିଏ ନୂଆ ଅନୁଭବ କଲା । ଭକ୍ତମାନଂକ ସହିତ ମିଶି ଭଜନ କୀର୍ତ୍ତନ କଲା । ଶେଷରେ ନିରାକାର ବାବା ଜ୍ୟୋତିକୁ ପାଖକୁ ଡାକି କହିଲେ, ମା' ତୋର ବାହାଘର ଠିକ୍ ହେଇ ଯାଇଛି । ତୁ ଆଉ କେଇଟା ଦିନ ପରେ ମଠକୁ ଅନ୍ଧାର କରି ଚାଲିଯିବୁ । କାହିଁକି ଆଉ ଏତେ ମାୟା ଲଗାଉଛୁ ? ଇଏ ମାଆଙ୍କୁ କ'ଣ ପାଇଁ ମଠକୁ ଡାକି ଆଣିଛୁ ?'

ଜ୍ୟୋତି ହୀରା ଅପାର ମନକଥାକୁ ଖୋଲି କହିଦେଲା । ଏତିକି ବେଳେ ସନାତନ ତା'ପିଉସାଙ୍କୁ ସାଂଗରେ ଧରି ମଠରେ ଆସି ପହଞ୍ଚିଲେ । ସମସ୍ତେ ବାବାଂକୁ ଘେରି ବସିଲେ । ବାବାଂକ ପରାମର୍ଶ କ୍ରମେ ଆଗାମୀ କାଲି କାର୍ତ୍ତିକ ଶୁକ୍ଳପକ୍ଷ ଦଶମୀ ପ୍ରାତଃକାଳ ଶୁଭ ମୁହୂର୍ତ୍ତରେ ଦୀକ୍ଷା ଗ୍ରହଣ କାର୍ଯ୍ୟକ୍ରମ ସ୍ଥିର ହେଲା । ହୀରା ଅପା ସହିତ ତାଂକର ସ୍ୱାମୀ ମଧ୍ୟ ଦୀକ୍ଷା ଗ୍ରହଣ କରିବାକୁ ଆଗ୍ରହ ପ୍ରକାଶ କଲେ ।

ଜ୍ୟୋତି ପଚାରିଲା - 'ବାବା! କାଲି ସକାଳୁ ତ ଦୀକ୍ଷା ଗ୍ରହଣ ହେବ । ଆଜିଠୁ କ'ଣ କ'ଣ କରିବାକୁ ହେବ, ସେକଥା ଟିକେ କହି ଦିଅନ୍ତୁ । ମୋ ଅପା-ପିଉସା ଦି'ଜଣ ଯାକ ଏ'ବିଷୟରେ କିଛି ଜାଣି ନାହାନ୍ତି' ।

ମଧୁବାବା କହିଲେ -'ମୁଁ କହି ଦେଉଛି ମା,' ଶୁଣ । ଆମ ଧର୍ମରେ ଦୀକ୍ଷା ଦାନ ମୁକ୍ତ ଆକାଶ ତଳେ ହୁଏ । ଆଜି ଉଭୟେ ଅପା ଆଉ ପିଉସାଂକ ପାଇଁ ଦି'ଖଣ୍ଡ ନୂଆ ବସ୍ତ୍ର ଆଣି ଗେରୁ କରେଇ ରଖିଥିବ । କାଲି ତାକୁ ଆମେ ପବିତ୍ର ଦ୍ୱାରା ଶୁଦ୍ଧ କରେଇ ଦେବୁ । ଶୂନ୍ୟ ବାସୀ ପରଂବ୍ରହ୍ମଂକୁ ସେ ବସ୍ତ୍ର ସମର୍ପଣ କରି ଦୀକ୍ଷା ଗ୍ରହଣକାରୀଙ୍କୁ ପିନ୍ଧିବାକୁ ଦିଆଯିବ ।

ଆମର ଦୀକ୍ଷା କହିଲେ, ବୁଝାଯାଏ-ଶପଥ ପାଠ ଶୂନ୍ୟକୁ ଚାହିଁ ଗୁରୁ ଅଲେଖ ମହିମାଙ୍କ ନାମ ତିନିଥର ଉଚ୍ଚାରଣ କରିବ । ତା'ପରେ ବାବାଂକଠାରୁ ଶୁଣି ଶୁଣି କହିବ- 'ହେ ଦଶଦିଗ ପାଳ, ଚନ୍ଦ୍ର ସୂର୍ଯ୍ୟ, ତ୍ରେତ୍ରିଶ କୋଟି ଦେବତା, ନବଲକ୍ଷ ତାରା, ପଞ୍ଚ ମହାଭୂତ ଆପଣମାନେ ମୋର ସାକ୍ଷୀ ରହିଲେ । ମୁଁ ଆଜି ଆପଣମାନଙ୍କ ସମ୍ମୁଖରେ ମହିମା ଧର୍ମରେ ଦୀକ୍ଷିତ ହେଲି । କୌଣସି ପରିସ୍ଥିତିରେ କଦାପି ମୁଁ ଏହି ଧର୍ମରୁ ବିଚ୍ୟୁତ ହେବିନାହିଁ । ଯଦି ହୁଏ, ତେବେ ଗୁରୁଦ୍ୱାରେ ମୁଁ ଦ୍ରୋହୀ ହେବି । ଏଭଳି ଗୁରୁଦ୍ରୋହୀ ନହେବା ପାଇଁ ମୋତେ ଆପଣ ଶକ୍ତି ଦିଅନ୍ତୁ । ଆପଣ ମୋତେ ସତ୍ୟ, ଧର୍ମ ଓ ନ୍ୟାୟ ପଥରେ ପଥିକ କରି ପରଂବ୍ରହ୍ମଂକ ସେବାରେ ବ୍ରତୀ କରାନ୍ତୁ । ମୋ ପିଣ୍ଡ-ପ୍ରାଣ, ଦେହ ଓ ଜୀବନକୁ ଆପଣଂକ ଶ୍ରୀଚରଣରେ ସମର୍ପଣ କଲି । ଅତୀତରେ ମୁଁ ଯାହା ଜ୍ଞାତସାରରେ ଓ ଅଜ୍ଞାତରେ ଦୋଷା ଦୋଷ କରିଛି, ତାକୁ ଆପଣ କ୍ଷମା କରି ଏ'ଜୀବକୁ ଆପଣଂକର ଯେଉଁ କାର୍ଯ୍ୟରେ ପ୍ରୀତ, ସେଥିରେ ନିୟୋଜିତ କରନ୍ତୁ । କାୟ-ମନୋବାକ୍ୟରେ, ଜ୍ଞାନ ଅଜ୍ଞାନରେ ଓ ସୁପ୍ତ ଓ ଜାଗ୍ରତ ଅବସ୍ଥାରେ ଆପଣଂକ ନାମ ଜପ ବ୍ୟତୀତ ଅନ୍ୟ କିଛି ପ୍ରବେଶ ନକରିବା ଦିଗରେ ଆପଣ ମୋତେ ସହାୟ ହୁଅନ୍ତୁ ।

- ଏହି ଶପଥ ପାଠ ପରେ ସାତଥର ସାଷ୍ଟାଙ୍ଗ ଦର୍ଶନ କରାଯିବ । ସେ ସବୁ ମୁଁ କାଲି ଶପଥ ପାଠ ପରେ ପରେ ଶିଖେଇ ଦେବି । ତା'ପରେ ଚଉଷଠି ସିଦ୍ଧ ଅନନ୍ତ କୋଟି ସାଧୁଙ୍କ ନିମନ୍ତେ ପ୍ରଣାମ କରିବ । ଆମ ଧର୍ମରେ ପ୍ରଣାମକୁ ଶରଣ କୁହାଯାଏ । ଶେଷରେ ତିନି ତାଳି ମାରି ପଶ୍ଚାତ୍‌ପଦ ହେବ । ବେଶ୍ ଏତିକି ।

- ଦୀକ୍ଷା ଗ୍ରହଣ ପରେ ଦୈନିକ ବଡ଼ି ଭୋରୁ ଉଠି ପବିତ୍ର ଓ ଗୋମୟ ନେଇ ସ୍ନାନ କରିବ । ପୂର୍ବ ଦିଗକୁ ଚାହିଁ ସାତଥର ସାଷ୍ଟାଙ୍ଗ ପ୍ରଣାମ କରିବ । ସଂଧ୍ୟାରେ ପଶ୍ଚିମ ଦିଗକୁ ଚାହିଁ ପାଞ୍ଚଥର ସାଷ୍ଟାଙ୍ଗ ପ୍ରଣାମ କରିବ । ପ୍ରତ୍ୟେକ ଦିନ ବିଶ୍ୱ ବ୍ରହ୍ମାଣ୍ଡରେ ଥିବା

ଜୀବ ଜଗତର ମଂଗଳ ନିମନ୍ତେ ପ୍ରଭୁଙ୍କ ନିକଟରେ ପ୍ରାର୍ଥନା କରିବ। ଦୀକ୍ଷା ଗ୍ରହଣ ପରେ ତୁମେ ସମଗ୍ର ଜୀବ ଜଗତକୁ ନିଜର ବୋଲି ମନେ କରିବ ।

କ'ଣ ମୋ କଥା ବୁଝି ପାରିଲେ ତ ମା'?

ମଧୁବାବାଂକ କଥାରେ ସମସ୍ତେ ହଁ ମାରିଲେ। ଆଗାମୀକାଲିର କାର୍ଯ୍ୟକ୍ରମ ପାଇଁ ମନେ ମନେ ପ୍ରସ୍ତୁତ ହେଲେ ।

ନିରାକାର ବାବା ଜ୍ୟୋତିକୁ ପାଖକୁ ଡକାଇ ସ୍ୱତନ୍ତ୍ର ଭାବରେ ଆଶୀର୍ବାଦ ପ୍ରଦାନ କଲେ। ଗୁରୁ ମହିମା ଅଲେଖ ଧ୍ୱନି ପରେ ସମସ୍ତେ ବିଦାୟ ନେଲେ । ଜ୍ୟୋତି ଲକ୍ଷ୍ୟ କରିଥିଲା- ନିରାକାର ବାବାଂକ ଦୁଇ ଆଖି କୋଣରୁ ଦୁଇ ବୁନ୍ଦା ଲୁହ ଜକେଇ ଆସିଥିଲା। ତାକୁ ଲୁଚେଇବା ପାଇଁ ବାବା ତଳକୁ ଚାହିଁ ରହିଥିଲେ ।

ବାଟରେ ଜ୍ୟୋତି ଅନ୍ୟ ମନସ୍କ ହେଇ ଭାବୁଥିଲା - 'ଯେଉଁ ବାବାଂକ ମନ ଅଟଳ ମେରୁ ପରି ଦୃଢ଼, ଯିଏ କି ମୋହ-ମାୟାଠାରୁ ଅନେକ ଦୂରତା ରକ୍ଷା କରନ୍ତି, ଯାହାଂକୁ ବିକାର ସ୍ପର୍ଶ କରିନାହିଁ, ଯିଏ ସତ କହିବାକୁ କଦାପି ପଛଘୁଞ୍ଚା ଦିଅନ୍ତି ନାହିଁ, ଯାହାର ଭବିଷ୍ୟତ ବାଣୀ କେବେ ବି ଅନ୍ୟଥା ହୋଇନାହିଁ, ଯାହାଙ୍କର ଦର୍ଶନ ପାଇଁ ହଜାର କୋଶ ଦୂରରୁ ଭକ୍ତମାନେ ବ୍ୟାକୁଳ ମନରେ ଧାଇଁ ଆସୁଛନ୍ତି, ଜ୍ଞାନ ଆଉ ତ୍ୟାଗର ପ୍ରତିମୂର୍ତ୍ତି ସେହି ନିରାକାର ବାବା ପୁଣି ଆଜି ମୋର ବିବାହ ବିଦାୟ କଥା ଚିନ୍ତା କରି ଲୁହ ଗଡ଼େଇ ପାରନ୍ତି ? ଏ'କଥା ବିଶ୍ୱାସ କରି ହେଉନାହିଁ। ସିଏ ତ ନିଜେ କହୁଥିଲେ, ବାହାଘର ପରେ ଝିଅ ଶାଶୂଘରକୁ ଯିବା ଏକ ସ୍ୱାଭାବିକ ପ୍ରକ୍ରିୟା । ତେବେ କ'ଣ ପାଇଁ ନିରାକାର ବାବାଂକ ଆଖିରେ ଲୁହ ଜକେଇ ଆସିଲା? ଟିକେ ପଚ଼ାରି ଦେଇଥିଲେ, ଭଲ ହେଇଥା'ନ୍ତା । ବାବା କଦାପି ମିଛ କହନ୍ତି ନାହିଁ, କିମ୍ବା କୌଣସି କଥାକୁ ଲୁଚେଇ ରଖନ୍ତି ନାହିଁ । ତେଣୁ ବାବାଂକୁ ଏହି ସାମାନ୍ୟ କଥାଟିକୁ ପଚାରି, ତାଂକ ମନରେ ଅଧିକ କଷ୍ଟ ଦେବାକୁ ଇଚ୍ଛା ହେଲାନାହିଁ । ତଥାପି ପୁଣି ଥରେ କେବେ ସୁଯୋଗ ମିଳିଲେ, ବାବାଂକୁ ନିଶ୍ଚୟ ପଚାରି ବୁଝିବି' ।

ଏହିଭଳି ଭାବି ଭାବି ଜ୍ୟୋତି ହୀରା ଅପା ସାଂଗରେ ଆସି ଘରେ ପହଞ୍ଚିଗଲା। କାଲି ସକାଳେ ତ ବାବାଂକ ସହିତ ଭେଟ ହେବ । ସେତେବେଳେ ଦେଖାଯିବ, ଆଗରୁ ଏତେ ଚିନ୍ତା କରି ଆଉ ଲାଭ କ'ଣ ? କାଲି ପାଇଁ କେବଳ ଦୁଇଖଣ୍ଡ ନୂତନ ବସ୍ତ୍ର ଗେରୁ କରା ହୋଇଥିବା ଦରକାର । ବାପା ଓ ପିଉସା ସେ ଦାୟିତ୍ୱ ନେଇ ବାହାରକୁ ଚାଲିଗଲେ।'





ଗତକାଲି ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁସାରେ ଶୂନ୍ୟ ଆକାଶ ତଳେ ଗଭୀର ଶ୍ରଦ୍ଧାର ସହିତ ହୀରା ଅପା ଓ ପିଉସା ମହିମା ଧର୍ମରେ ଦୀକ୍ଷିତ ହେଲେ। ଜ୍ୟୋତି ବି ସାଂଗରେ ଯାଇଥିଲା । ସେ ନିରାକାର ବାବାଂକ ପାଖକୁ ଯାଇ ନିରୋଳାରେ ତାଂକ ଆଖିରେ ଢ଼ଳଢ଼ଳ ହେଉଥିବା ଲୁହର କାରଣ ସଂପର୍କରେ ପଚ଼ାରି ବୁଝିବାକୁ ସ୍ଥିର କରିଥିଲା ସତ; କିନ୍ତୁ ବାବାଂକର ବ୍ୟସ୍ତତା ତଥା ଅପା-ପିଉସାଙ୍କର ନୂଆ ରୂପ ଦେଖି ସବୁ କିଛି ଭୁଲିଗଲା । ନିରାକାର ବାବାଂକ ସହିତ ଅନ୍ୟ କେତେଜଣ ବାବା ମିଶି ସବୁବେଳେ କିଛି ନା କିଛି ଆଲୋଚ଼ନାରେ ଲାଗି ରହିଥା'ନ୍ତି । କିଛି ଉପାୟ ନଥିଲା । ଭାବିଥିଲା, 'କାଲି ତ ବରଘର ତରଫରୁ ନିର୍ବନ୍ଧ କରିବାକୁ ଲୋକେ ଆସିଥିବେ । ବାବା ନିଶ୍ଚୟ ଆମ ଘରକୁ ଆସିବେ, ତେବେ ସେଇଠି ମନଖୋଲି ତାଂକ ସହିତ କଥା ହୋଇଯିବି' ।

- ଆଜି କିନ୍ତୁ ବାପାଂକ ସହିତ ମଧୁବାବା ଆଉ ଗାଆଁ ଯାକର ଲୋକେ ସମସ୍ତେ ବ୍ୟସ୍ତ । ଅଳ୍ପ ସମୟ ପରେ ବରଘର ଲୋକଂକ ଗାଡ଼ି ଆସି ପହଞ୍ଚିଯିବ । ମାମୁ, ମାଇଁ ତାଂକ ପିଲାଂକୁ ସାଂଗରେ ଧରି ଆଜି ସକାଳେ ପହଞ୍ଚିଛନ୍ତି । ବାହାଘର ଆହୁରି ଆଠଦିନ ଅଛି, କିନ୍ତୁ ଏବେଠାରୁ ଗହଳି ଲାଗି ଗଲାଣି । ବୋଉକୁ ତରନାହିଁ ।

ବାପା ଆସି ଖବର ଦେଲେ, 'ବରଘର ଲୋକେ ଦିନ ବାରଟା ସୁଦ୍ଧା ଆସି ଘରେ ପହଞ୍ଚି ଯିବେ' । ପୁରୋହିତ ନନା ଏଣେ ସବୁ ଯୋଗାଡ଼ କରି ସାରିଲେଣି ।'

ଏଣେ ମାଇଁ ମୋତେ ନୂଆ ଶାଢୀ ପିନ୍ଧେଇ ସଜ କରିବାରେ ବ୍ୟସ୍ତ । ଦାଦା-ଖୁଡ଼ୀ, ପଡ଼ିଶାଘର ଲୋକେ ସମସ୍ତେ ରନ୍ଧା-ବଢ଼ା, ଭୋଜି-ଭାତ ଆଉ କୁଣିଆ ଚର୍ଚ୍ଚାରେ ଲାଗି ପଡ଼ିଛନ୍ତି ।

ଜ୍ୟୋତି ମନେ ମନେ ନିରାକାର ବାବାଂକୁ ଖୋଜୁଛି । ତା' ଆଖି ଆଗରେ

ବାବାଂକ ଆଖିରେ ଲୁହ ଜକଜକ ହୋଇ ବାରଂବାର ଦେଖା ଯାଉଛି । ମଝିରେ ଥରେ ଦି' ଥର ସେ ଦାଣ୍ଡ ଦୁଆରକୁ ଯାଇ ବାବାଂକ ବାଟକୁ ଚାହିଁ ଫେରିଲାଣି ।

ଜ୍ୟୋତି ଆଖିକୁ ଦେଖାଗଲା, ଅର୍ଜୁନୀ ଦାଦାଂକ ଦାଣ୍ଡ ଦୁଆରେ ଚାନ୍ଦୁଆ ବନ୍ଧା ହେଲାଣି । ତାଂକର ନାତି ଏକୋଇଶିଆ ଉପଲକ୍ଷେ ସେଇଠି ପାଲା ହେବ । ଭାରି ନାମକରା ପାଲା ଦଳ କେନ୍ଦ୍ରାପଡ଼ାରୁ ଆସୁଛନ୍ତି । ଆଗରୁ ଅର୍ଜୁନୀ ଦାଦା କହୁଥିଲେ- 'ଏ'ପାଲାଦଳର ଗାୟକ ଜଣକ ଉଚ୍ଚ ଶିକ୍ଷିତ । ଓଡ଼ିଆ ସାହିତ୍ୟରେ ଜଣେ ବଡ଼ ପଣ୍ଡିତ । ସଂସ୍କୃତରେ ଯେତେ ଯାହା ଭଲ ବହି ଲେଖା ଯାଇଛି, ସେ ସବୁର ସାରକଥା ତାଂକ ମୁହଁରେ ବନ୍ଧା । ଚମତ୍କାର କଣ୍ଠସ୍ୱର ତାଂକର । ରାମାୟଣ କି ମହାଭାରତର ଯେକୌଣସି ବିଷୟ ତାଂକୁ କହିଲେ, ସେ ଷ୍ଟେଜ୍ ଉପରେ ହିଁ ଆରମ୍ଭ କରିଦେବେ । ତାଂକର ଶ୍ରୀପାଳିଆ ତଦ୍ଧୁଁ ବଳି । ହସେଇ ମଜେଇ ଗାଉଁଲି ଲୋକଙ୍କ ମନକୁ ବାନ୍ଧି ରଖିବାରେ ସେ ଓସ୍ତାଦ୍ । ସେଇଥିପାଇଁ ଅନ୍ୟମାନେ ରାତିକୁ ପାଞ୍ଚଶହ ଟଂକା ନେଉଥିଲା ବେଳେ ଏମାନେ ଦେଢ଼ ହଜାର ଟଂକା ନିଅନ୍ତି ।'

- କାଲି ସଂଜବେଳେ ଦାଦା ନିଜେ ଯାଇ ଘରେ ଘରେ ବୁଲି ସମସ୍ତଙ୍କୁ ନିମନ୍ତ୍ରଣ କରି ଯାଇଛନ୍ତି । ସତ୍ୟନାରାୟଣ ପୂଜା ଯରେ ପରେ ପାଲା ଦେଖିବାକୁ ।

- ବୋଉ ପାଲା ଦେଖିବାକୁ ଭାରି ପସନ୍ଦ କରେ । ଭଲ ପାଲାବାଲା ହେଇଥିଲେ, ସେ ସାରା ରାତି ବସି ବେଶ୍ ଉପଭୋଗ କରେ । କାହାଣୀର ନାୟକ ନାୟିକାଙ୍କ ସୁଖ ଦୁଃଖକୁ ସେ ନିଜର ମନେ କରି କେତେବେଳେ ଆନନ୍ଦରେ ନାଚିଉଠେ, ତ ପୁଣି କେତେବେଳେ କୋହ ଉଠେଇ କାନ୍ଦି ପକାଏ । ତା' ଲୁଗାକାନି ଲୁହରେ ଓଦା ହେଇଯାଏ ।

- ଆଜି ମୋ' ଜୀବନ ପାଇଁ ଏକ ମହତ୍ତ୍ୱପୂର୍ଣ୍ଣ ଦିବସ । ନିର୍ବନ୍ଧ ଅର୍ଥ ହିଁ ଅଧା ବାହାଘର । ଶ୍ୱଶୁର ଘର ଲୋକେ ମୋତେ ତାଂକର ବୋହୂର ମାନ୍ୟତା ଦେବେ । ଯାହାହେଉ ଭଲ ଦିନରେ ଅର୍ଜୁନୀ ଦାଦାଙ୍କର ସତ୍ୟ ନାରାୟଣ ପାଲା ପଡ଼ିଛି । ମନଭରି ଆଜି ସାରା ରାତି ପାଲା ଦେଖିବି । ଏମିତି ସୁଯୋଗ ପୁଣି କେବେ ମିଳିବ କି ନାହିଁ କିଏ କହି ପାରିବ!'

ଏମିତି ପାଲା ସଂପର୍କରେ ଭାବୁ ଭାବୁ ଜ୍ୟୋତି ଆଗରେ ଆସି ମଧୁବାବା ଠିଆ ହୋଇ ପଡ଼ିଲେ । ସେ କହିଲେ - 'ମା' ! ବଡ଼ବାବା ଆଜି ଏଠିକି ଆସି ପାରିବେ ନାହିଁ । ବାହାରୁ କେତେଜଣ ଭକ୍ତ ମଠକୁ ଆସିଛନ୍ତି । ତେଣୁ ସେ ମୋତେ ପଠେଇଛନ୍ତି,

ଆଜି ଦିନସାରା ମୁଁ ଏଇଠି ତୋ' ନିର୍ବନ୍ଧ କାମ ଦେଖିବି' ।

ଜ୍ୟୋତି ଘର ଭିତରକୁ ଫେରି ଯାଇଛି କି ନାହିଁ, କିଏ ଜଣେ ଖବର ଦେଲା। ବରଘର ଲୋକଙ୍କ ଗାଡ଼ି ଆସି ଗଲାଣି। ସମସ୍ତେ ବ୍ୟସ୍ତ ହେଇ ପଡ଼ିଲେ । ତରବର ହେଇ ମଧୁବାବାଙ୍କୁ ସାଂଗରେ ଧରି ଗାଡ଼ି ପାଖକୁ ଗଲେ, ସେମାନଙ୍କୁ ଘର ଭିତରକୁ ପାଛୋଟି ଆଣିଲେ । ପୁଅର ମାମୁ, ଗାଆଁର କେତେଜଣ ମୁଖିଆ ଲୋକ, ଜ୍ୟୋତିର ଭାବୀଶାଶୂଙ୍କ ସହିତ ବାରିକ ଦରକାରୀ ଜିନିଷ ପତ୍ର ଧରି ସିଧା ପୂଜା ବେଦୀ ପାଖକୁ ଆସିଲେ। ସେଇଠି ସେମାନଙ୍କର ଅତିଥି ଚର୍ଚ୍ଚା କରାଗଲା। ପୁରୋହିତ ନନାଙ୍କ ଗୁରୁ ଗମ୍ଭୀର ମନ୍ତ୍ର ଉଚ୍ଚାରଣରେ ଜ୍ୟୋତିର ଘର କମ୍ପି ଉଠିଲା । ମନଭରି ସମସ୍ତେ ନିର୍ବନ୍ଧ ପୂଜାକୁ ଉପଭୋଗ କଲେ ।

ଗୋଟିଏ ପରେ ଗୋଟିଏ ଅଳଙ୍କାର କାଢ଼ି ଯେତେବେଳେ ଜ୍ୟୋତିର ଶାଶୂମା' ତାକୁ ପିନ୍ଧାଇ ଚାଲିଲେ, ଦେଖଣାହାରୀ ବଂଧୁ-ବାନ୍ଧବ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଥା'ନ୍ତି। ମଥାରେ ମଥା ମଣି, ହାତରେ ସୁନା-ଚୂଡ଼ି, ବାଲା, ବାହୁରେ ତାଡ଼, କାନରେ କୁଣ୍ଡଳ, ବେକରେ ମୋଗଲ ଆଜମୀ ହାର, ଅଣ୍ଟାରେ ସୁନା ତିଆରି ଅଣ୍ଟାସୂତା, ପାପୁଲିରେ ହାତପଦ୍ମ, ଗୋଡ଼ରେ ପାଉଁଜି ଓ ଅନ୍ୟ ସବୁ ଗହଣା ପିନ୍ଧି ସାରିଲା ପରେ, ଜ୍ୟୋତି ଗୋଟିଏ ଦେବୀ ପ୍ରତିମା ପରି ଦିଶିଲା ।

ଖିଆ ପିଆ ହସ ଖୁସି ବଂଧୁ ମିଳନରେ ନିର୍ବନ୍ଧ କାର୍ଯ୍ୟକ୍ରମ ଶେଷ ହେଲା। ଅର୍ଜୁନୀ ଦାଦା ନୂଆ ସମୁଦୁଣୀଂକ ସହିତ ବେଶ୍ ହସ ମଜାକ୍ କଲେ। ଶେଷରେ ସେ କହିଲେ- 'ଆପଣମାନେ ଆଜି ଦୟାକରି ମୋ ନାତି ଏକୋଇଶିଆ ପୂଜାରେ ଯୋଗଦେବେଂ। ଆଗତୁରା ପାଲା ଆରମ୍ଭ ହେଇଯିବ। କେନ୍ଦ୍ରାପଡ଼ାରୁ ନାମକରା ପାଲାଦଳ ଆସିଛନ୍ତି । ଆପଣ କିଛି ସମୟ ପାଲା ଦେଖିକି ଯିବେ' ।

ପୁଅର ମାମୁ ଟିକେ ପାଲା ପ୍ରିୟ ମଣିଷ। ସେ ଆଗ ଏହି ପ୍ରସ୍ତାବରେ ରାଜି ହେଇଗଲେ। ଜ୍ୟୋତିର ଭାବୀଶାଶୂ ଟିକେ କୁଛୁ-କୁଛୁ ହେଉଥିଲେ, ଶେଷରେ ସନାତନଙ୍କର ଅନୁରୋଧ ରକ୍ଷା କରି, ଅଳ୍ପ ସମୟ ପାଇଁ ପାଲା ଦେଖି ଫେରି ଯିବାକୁ ରାଜି ହେଲେ।

ସଂଜବେଳକୁ ସତ୍ୟ ନାରାୟଣ ପୂଜା ଆରମ୍ଭ ହେଇଗଲା। ଦି' ସମୁଦୁଣୀ ପାଖା ପାଖି ବସିଛନ୍ତି। ଜ୍ୟୋତି ତା'ର ସାଂଗମାନଂକ ମେଳରେ ବସିଛି। ବରଘର ଲୋକେ ଜ୍ୟୋତିଘର ବଂଧୁ ବାଂଧବଙ୍କ ସହିତ ମିଶି ପାଲା ମଣ୍ଡପକୁ ଘେରି ବସିଛନ୍ତି।

ପାଲା ଆରମ୍ଭରେ ଗାୟକ ମହାଶୟ ଗୃହକର୍ତ୍ତାଂକୁ ପଚାରିଲେ, 'ଆଜି କେଉଁ

ବିଷୟ ପରିବେଷଣ କରିବା ? ଆଦେଶ ହେଉ' ।

ଉପସ୍ଥିତ ଦର୍ଶକମାନେ ଫୁସୁରୁ ଫାସର ହେଲେ। ଗାଆଁର ବୟସ୍କ ଲୋକ ଜଣକ କହିଲେ - 'ଆପଣ ଯେଉଁ ବିଷୟଟିକୁ ଭଲ ଭାବରେ ପରିବେଷଣ କରି ପାରନ୍ତି, ତାକୁ ହିଁ ଆରମ୍ଭ କରନ୍ତୁ। କାରଣ ଆଜି ଆମ ଗାଁ'କୁ ବିଶିଷ୍ଟ ଅତିଥିମାନେ ଆସିଛନ୍ତି, ସେମାନେ ଯେମିତି ଆପଣଙ୍କ ସୁନାମକୁ ତାଂକ ଗାଁ'ରେ ପ୍ରଚାର କରି ପାରିବେ। ସେଇଥି କରନ୍ତୁ '।

ଗାୟକ ମହାଶୟ- 'ଉତ୍ସାହିତ ହୋଇ କହିଲେ, 'ଆମ ଦେଶର ସଂସ୍କୃତି ଦୁଇଟି ମହାକାବ୍ୟକୁ ଅତ୍ୟନ୍ତ ସମ୍ମାନ ଜଣାଏ। ସେଥିମଧ୍ୟରୁ ଗୋଟିଏ ହେଲା - ରାମାୟଣ, ଅନ୍ୟଟି ହେଲା-ମହାଭାରତ। ଲୋକେ କହନ୍ତି - ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ । ଅର୍ଥାତ୍ ମହାଭାରତ କାବ୍ୟରେ ସମଗ୍ର ଭାରତବର୍ଷର ଚରିତ୍ର ଚିତ୍ରଣ କରା ଯାଇଛି। ସେହି ମହାଭାରତର ଆଦିପର୍ବର କୁରୁବଂଶ ରକ୍ଷା ଉପାଖ୍ୟାନଟିକୁ ମୁଁ ମୋର ପଣ୍ଡିତ ଦର୍ଶକ ବୃନ୍ଦଂକ ସମ୍ମୁଖରେ ପରିବେଷଣ କରିବାକୁ ଯାଉଛି' ।

ଉପସ୍ଥିତ ଦର୍ଶକମାନେ କରତାଳି ଦେଇ ଗାୟକ ମହାଶୟଂକ ପ୍ରସ୍ତାବକୁ ସମର୍ଥନ କଲେ ।

ମଧୁର କଣ୍ଠ ସ୍ୱରରେ ମହାଭାରତର ଶ୍ଳୋକ ଗାନ କରି ଗାୟକ ମହାଶୟ ବୁଝାଇ ଦେଲେ।

'ଶାନ୍ତନୁ ଏବଂ ଗଂଗାଙ୍କର ପୁତ୍ର ଦେବବ୍ରତ କଠୋର ପ୍ରତିଜ୍ଞା କରି ପ୍ରତିଶ୍ରୁତି ଦେଇଥିଲେ, ମୁଁ ସତ୍ୟ ରକ୍ଷାକରି କଦାପି ବିବାହ କରିବି ନାହିଁ, କିମ୍ବା କୁରୁ ସିଂହାସନ ଆରୋହଣ କରିବି ନାହିଁ । ତେଣୁ ସେ ଶାନ୍ତନୁଂକର ଦ୍ୱିତୀୟ ପତ୍ନୀ ସତ୍ୟବତୀଙ୍କର ପୁତ୍ର ବିଚିତ୍ରବୀର୍ଯ୍ୟ ସହିତ ଅମ୍ବିକା ଓ ଅମ୍ବାଳିକାକୁ ବିବାହ କରାଇ ଦେଲେ।

ରାଜା ବିଚିତ୍ରବୀର୍ଯ୍ୟ ଥିଲେ, ରୂପରେ ଅଶ୍ୱିନୀ କୁମାରଙ୍କ ଭଳି ସୁନ୍ଦର। ଦେବତାଙ୍କ ସମାନ ପରାକ୍ରମୀ । ସେ ଦୁଇ ପତ୍ନୀଙ୍କ ସହିତ ଥାଇ ସାତ ବର୍ଷ କାଳ ସୁଖରେ ରାଜ୍ୟ ଶାସନ କରିଥିଲେ। ରାଜଯକ୍ଷ୍ମା ରୋଗରେ ପୀଡ଼ିତ ହୋଇ ସେ ପରଲୋକ ଗମନ କଲେ । ତାଂକର କୌଣସି ସନ୍ତାନ ସନ୍ତତି ଜନ୍ମଲାଭ କରି ନଥିଲେ । ଫଳରେ କୁରୁବଂଶ ପ୍ରାୟ ବୁଡ଼ିବାକୁ ବସିଲା। ରାଜମାତା ସତ୍ୟବତୀ ଯୁବା ବୟସରେ ପୁତ୍ରକୁ ହରାଇ ଅତ୍ୟନ୍ତ ଦୁଃଖରେ ଦିନ କାଟିଲେ। ଏଣେ ଯୁବତୀ ରାଣୀମାନେ ପୁତ୍ରଟିଏ ପାଇଁ ବ୍ୟାକୁଳ ହେଉଥିଲେ।

କୁରୁକୁଳ ବୁଡ଼ିଯିବା କଥାକୁ ଲକ୍ଷ୍ୟ କରି ସତ୍ୟବତୀ ବିଭିନ୍ନ କଥା ଚିନ୍ତା

କରିବାକୁ ଲାଗିଲେ । ଶେଷରେ ସେ ଧର୍ମ, ପିତୃକୁଳ ଓ ମାତୃକୁଳକୁ ଦୃଷ୍ଟିରେ ରଖି ଧର୍ମାତ୍ମା ଗଂଗାପୁତ୍ର ଭୀଷ୍ମଙ୍କ ପାଖକୁ ଯାଇ କହିଲେ - 'ପୁତ୍ର ! ମହାରାଜା ଶାନ୍ତନୁଙ୍କର ପୁତ୍ର ହେଇ ଥିବାରୁ ତାଂକର କୀର୍ତ୍ତି-ଯଶ ଓ ବଂଶକୁ ରକ୍ଷା କରିବା ବର୍ତ୍ତମାନ ତୁମର କର୍ତ୍ତବ୍ୟ । ତୁମେ ଜଣେ ସତ୍ୟ ଓ ଧର୍ମ ରକ୍ଷାକାରୀ ସୁପୁରୁଷ । ତୁମର ଧର୍ମନିଷ୍ଠ ଓ କୁଳୋଚିତ ସଦାଚାର ଦେଖି ମୁଁ ଶୁକ୍ରାଚାର୍ଯ୍ୟ ଓ ବୃହସ୍ପତିଙ୍କ ସହିତ ତୁମର ଜ୍ଞାନକୁ ତୁଳନା କରେ । ତେଣୁ ତୁମ ଉପରେ ମୋର ଗଭୀର ବିଶ୍ୱାସ ରହିଛି । ତୁମକୁ ଆଜି ଏକ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଦେବାକୁ ମୁଁ ନିଷ୍ପତ୍ତି ନେଇଛି । ପ୍ରଥମେ ମୋର କଥାକୁ ଧ୍ୟାନ ପୂର୍ବକ ଶୁଣ, ତା'ପରେ ତାକୁ ପାଳନ କରିବାକୁ ଚେଷ୍ଟାକର' ।

-ମୁଁ ଜାଣେ, ମୋର ପୁତ୍ର ତଥା ତୁମର ଭାଇ ରାଜା ବିଚିତ୍ରବୀର୍ଯ୍ୟ ତମର ପ୍ରିୟ ଥିଲା । ସେ ଯୁବା ବୟସରେ ସ୍ୱର୍ଗବାସୀ ହେଇଗଲା । ତା'ର ଦୁଇ ଜଣ ସୁନ୍ଦରୀ ତଥା ଯୁବତୀ ରାଣୀଙ୍କର ପୁତ୍ରଲାଭର ପ୍ରବଳ ଆଶା ରହିଛି । ଆମ କୁଳର ସନ୍ତାନ ପରଂପରାକୁ ସୁରକ୍ଷିତ ରଖିବା ପାଇଁ ତୁମେ ନିଜେ ହିଁ ତାଙ୍କ ଗର୍ଭରୁ ସନ୍ତାନ ଉତ୍ପନ୍ନ କର । ଏହି ଧର୍ମକାର୍ଯ୍ୟ କରିବାକୁ ମୁଁ ତୁମକୁ ଅନୁରୋଧ କରୁଛି ।

-ତୁମେ ଜାଣ ଭୀଷ୍ମ, ତୁମର ପୂର୍ବ ପୁରୁଷମାନେ ନର୍କଗାମୀ ହେବାକୁ ଯାଉଛନ୍ତି। ତାଂକୁ ସେଥିରୁ ରକ୍ଷା କରିବା ପାଇଁ ଏହି ରାଣୀ ଦୁଇଜଣକୁ ତୁମେ ବିବାହ କରି ଭାରତର ପ୍ରଜାଙ୍କୁ ଆନନ୍ଦରେ ପାଳନ କର' ।

-ସତ୍ୟବତୀଙ୍କର ଅନୁରୋଧ ଓ ଆଦେଶକୁ ଶୁଣି ଭୀଷ୍ମ ନମ୍ର ହୋଇ କହିଲେ, 'ମାତା ! ଆପଣ ଯାହା କହିଲେ, ତାହା ଅବଶ୍ୟ ଧର୍ମଯୁକ୍ତ ଓ ନ୍ୟାୟ ସଂଗତ । କୁଳରକ୍ଷା ତଥା ପୂର୍ବ ପୁରୁଷଙ୍କ ଉଦ୍ଧାର ପାଇଁ ଏହା କରିବା ଉଚିତ । କିନ୍ତୁ ମୁଁ ରାଜ୍ୟ ଲୋଭରେ ନିଜକୁ ଅଭିଷେକ କରାଇ ପାରିବି ନାହିଁ, କିମ୍ବା ସ୍ତ୍ରୀ ସହବାସ ବି କରି ପାରିବି ନାହିଁ । ରାଜ୍ୟ ଲୋଭ ଓ ସନ୍ତାନ ଉତ୍ପନ୍ନ ନକରିବା ପାଇଁ ମୁଁ ଯେଉଁ କଠୋର ପ୍ରତିଜ୍ଞା କରିଛି, ତାହା ଆପଣଂକୁ ଭଲ ଭାବେ ଜଣା । ତାକୁ ମୁଁ ନିଶ୍ଚୟ ପାଳନ କରିବି । ମୋତେ ମୋର ଧର୍ମ ପାଳନ କରିବାକୁ ଦିଅ ମା' ।

ସତ୍ୟବତୀ ପୁଣି ବୁଝେଇବାକୁ ଯାଇ କହିଲେ, 'ପୁତ୍ର ! ତୁମେ ଯେଉଁ ପ୍ରତିଜ୍ଞା କରିଥିଲ, ତାହା ଥିଲା- ମୋ ସ୍ୱାର୍ଥରକ୍ଷା ଉଦ୍ଦେଶ୍ୟରେ । ଏବେ ମୁଁ ଚାହେଁ, ତୁମେ ସେ ପ୍ରତିଜ୍ଞାରୁ ଓହରି ଆସ । ଉତ୍ତରାଧିକାରୀ ସୂତ୍ରରେ ପ୍ରାପ୍ତ ରାଜ୍ୟଭାର ଗ୍ରହଣ କର' ।

ସତ୍ୟବତୀଂକ ବ୍ୟାକୁଳତା ଦେଖି ଭୀଷ୍ମ କହିଲେ, 'ଶୁଣମାତା ! ଜଣେ କ୍ଷତ୍ରିୟ

ପକ୍ଷରେ ସତ୍ୟରୁ ବିଚ୍ୟୁତ ହେବାଠାରୁ ଆଉ ଗର୍ହିତ ପାପ ନାହିଁ । ଭରତ ବଂଶ ସନ୍ତାନ ପରଂପରାକୁ ସୁରକ୍ଷିତ କରିବା ପାଇଁ ଯେଉଁ ନିୟତ ଉପାୟ ରହିଛି, ତାହା ମୁଁ କହୁଛି ଶୁଣ ।

କୌଣସି ଜଣେ ଗୁଣବାନ ପୁରୁଷଙ୍କୁ ଧନ ରତ୍ନ ଦେଇ ନିମନ୍ତ୍ରଣ କରି ନିଅନ୍ତୁ । ଯିଏ କି ବିଚିତ୍ରବୀର୍ଯ୍ୟଙ୍କର ପତ୍ନୀ ଗର୍ଭରୁ ସନ୍ତାନ ଉତ୍ପନ୍ନ କରି ପାରିବେ । ଗୁଣବାନର ଅର୍ଥ, ନିୟୋଗ ବିଧି ସଂପର୍କରେ ଜ୍ଞାନ ଥିବା ସଂଯମୀ ପୁରୁଷ । ମନୁସ୍ମୃତି ଅନୁସାରେ - କୁଳରକ୍ଷା ଉଦ୍ଦେଶ୍ୟରେ ବିଧବା ପତ୍ନୀଙ୍କ ବରପକ୍ଷର ଗୁରୁଜନଙ୍କ ଦ୍ୱାରା ନିଯୁକ୍ତ, ଗୁଣବାନ ସଂଯମୀ ପୁରୁଷ ସହାୟତାରେ ସନ୍ତାନ ଉତ୍ପନ୍ନ କରା ଯାଇପାରେ ।

***ବିଧବାୟାଂ ନିଯୁକ୍ତସ୍ତୁ ଘୃତାକ୍ତୋ ବାଗ୍ୟତୋ ନିଶି,***
***ଏକମୁତ୍ପାଦୟେତ୍ ପୁତ୍ରଂ ନ ଦ୍ୱିତୀୟ କଥଂଚନ ।***

ଏଭଳି ପରିସ୍ଥିତିରେ ସଂଯମୀ ପୁରୁଷ ଜଣକ ଦେହରେ ଘୃତ ଲେପନ କରି ଅର୍ଥାତ୍ ଶରୀରର ସୌନ୍ଦର୍ଯ୍ୟକୁ ନଷ୍ଟ କରି, କୌଣସି ପ୍ରେମାଳାପ ନକରି ଅନ୍ଧକାର ରାତ୍ରିରେ କେବଳ ଥରେ ମାତ୍ର ସନ୍ତାନ ଉତ୍ପନ୍ନ ପାଇଁ ନାରୀ ସହବାସ କରିପାରେ । ଏହା ଶାସ୍ତ୍ର ସମ୍ମତ' ।

ଧର୍ମାତ୍ମା - ସତ୍ୟ ସ୍ୱରୂପ ପୁତ୍ର ଭୀଷ୍ମଠାରୁ ଏ'କଥା ଶୁଣି ସତ୍ୟବତୀ କହିଲେ, 'ପୁତ୍ର ! ତୁମେ ଯାହା କହୁଛ, ତାହା ଅବଶ୍ୟ ଠିକ୍ ! ଆଜି ଏହି ଜରୁରୀ କାଳୀନ ଅବସ୍ଥାରେ ମୁଁ ଆଉ ଗୋଟିଏ ଅପ୍ରିୟ ସତ୍ୟ ତୁମ ଆଗରେ ପ୍ରକାଶ କରିବାକୁ ଚାହେଁ । ଏହାଦ୍ୱାରା ସତ୍ୟରକ୍ଷା ସମ୍ଭବ ହୋଇ ପାରିବ । ମନଦେଇ ଶୁଣ । ତା'ପରେ ଯାହା ଆମର କର୍ତ୍ତବ୍ୟ, ତାହା ହିଁ କରିବା ।

- ତୁମେ ନିଶ୍ଚୟ ମହାରାଜ ବସୁଙ୍କର ନାମ ଶୁଣିଥିବ । ମୁଁ ତାଙ୍କରି ଔରସରୁ ଗୋଟାଏ ମାଛ ଗର୍ଭରୁ ହିଁ ଜନ୍ମ ଗ୍ରହଣ କରିଛି । ପରମ ଧର୍ମଜ୍ଞ ମଲ୍ଲାହ ମୋତେ ମାତାଗର୍ଭରୁ ଉଦ୍ଧାର କରି ଲାଳନ ପାଳନ କରି ବଡ଼ କରିଥିଲେ । ମୋର ପାଳିତ ପିତାଙ୍କର ଗୋଟାଏ ନୌକା ଥିଲା । ସେ ଧନ ରୋଜଗାର ପାଇଁ ନୁହେଁ, ଧର୍ମ ଅର୍ଜନ ପାଇଁ ନୌକାରେ ଲୋକମାନଙ୍କୁ ପାରି କରୁଥିଲେ ।

ମୋର ଯୌବନର ପ୍ରଥମ ଅବସ୍ଥାରେ, ଦିନେ ମୁଁ ଏକୁଟିଆ ଘାଟରେ ଥିଲି । ମହର୍ଷି ପରାଶର ଯମୁନା ନଦୀ ପାର ହେବାକୁ ଚାହିଁଲେ । ମୁଁ ତାଂକୁ ନଦୀପାର କରାଇ ଦେବାକୁ ନୌକାରେ ବସିଲି । ଏହା ମଧ୍ୟରେ ମହର୍ଷି ମୋ ସହିତ ମଧୁର ଆଳାପ କଲେ ।

ମୋ ବଂଶର ପରିଚୟ୍ ଏବଂ ମୋ ଜନ୍ମର ରହସ୍ୟ ପ୍ରକାଶ କରିଦେଲେ । ତା'ପରେ ସେ ମୋର ଅନିଚ୍ଛା ସତ୍ତ୍ୱେ ମୋତେ ତାଂକର ବଶ କରିନେଲେ । ମହର୍ଷି ମୋତେ ଦୁର୍ଲ୍ଲଭ ବର ପ୍ରଦାନ କରି ତାଂକ ସହିତ ରତିକ୍ରୀଡ଼ା କରିବାକୁ ଉତ୍ସାହିତ କଲେ । ଏଣେ ପିତାଙ୍କର ଭୟ, ତେଣେ ମହର୍ଷିଙ୍କର ଅଭିଶାପକୁ ଭୟ ଥିଲା । ତଥାପି ତାଂକର ଅଭୟବାଣୀ ତଥା ଆଶ୍ଚର୍ଯ୍ୟ ଜନକ ପରିବେଶ ଫଳରେ ମୁଁ ତାଂକ ସହିତ ମିଳିତ ହେଲି ।

ତା'ପୂର୍ବରୁ ମୋ ଶରୀରରେ ମାଛ ଗନ୍ଧ ଓ ତୀବ୍ର ଦୁର୍ଗନ୍ଧ ବାହାରୁ ଥିଲା, କିନ୍ତୁ ମହର୍ଷି ତାଂକ ଶକ୍ତି ବଳରେ ସେ ଗନ୍ଧ ବଦଳରେ ମୋ ଶରୀରରେ ସୁଗନ୍ଧ ଭରିଦେଲେ, ଯାହା ଯୋଜନ ଯୋଜନ ବ୍ୟାପି ମହ ମହ ବାସୁଥିଲା । ସିଏ ହିଁ ମୋର ନାମ ମତ୍ସ୍ୟଗନ୍ଧା ପରିବର୍ତ୍ତେ ଯୋଜନ ଗନ୍ଧା ରଖିଦେଲେ ।

- ଆହୁରି ଆଶ୍ଚର୍ଯ୍ୟର କଥା, କୁମାରୀ ଅବସ୍ଥାରେ ହିଁ ମହର୍ଷିଙ୍କର ଶକ୍ତିରୁ ମୋ ଗର୍ଭରେ ମହର୍ଷି ବ୍ୟାସ ରହିଗଲା । ପରାଶରଙ୍କ ଅଲୌକିକ ତପସ୍ୟା ବଳରେ ବ୍ୟାସ ସେହି ଯମୁନା ନଦୀ ଦ୍ୱୀପରେ ଜନ୍ମ ଗ୍ରହଣ କରି ସଂଗେ ସଂଗେ ବଡ଼ ହୋଇଗଲା । ନିଜ ପିତାଂକ ସହିତ ଚାଲି ଯିବାକୁ ମୋର ଅନୁମତି ମାଗିଲା । ଗଲାବେଳେ କହିଥିଲା, 'ମାତା ! ତୁମେ ସଂକଟ କାଳରେ ମୋତେ ସ୍ମରଣ କରିବ । ମୁଁ ନିଶ୍ଚୟ ଆସି ତୁମର ଦୁଃଖ ଦୂର କରିବି । '

- ସେହି ଅବାଞ୍ଛିତ ପୁତ୍ର ମୋର ବ୍ୟାସ, ବର୍ତ୍ତମାନ ନିଜର ତପୋବଳ, ଧର୍ମବଳ ଓ ଜ୍ଞାନ ବଳରେ ବଳୀୟାନ ହୋଇ କୃଷ୍ଣ ଦ୍ୱୈପାୟନ ନାମରେ ଖ୍ୟାତି ଅର୍ଜନ କରି ପାରିଲାଣି । ସେ ଚାରିବେଦକୁ ପୃଥକ୍ ପୃଥକ୍ କରି ଅତ୍ୟନ୍ତ ସରଳ ଭାବରେ ପୁରାଣ ଶାସ୍ତ୍ର ରଚନା କରି ଜନ ସମାଜରେ ଅତ୍ୟନ୍ତ ଆଦରଣୀୟ ହେଇ ପାରିଛି । ମୁଁ ଜାଣେ, ସେ ଜଣେ ସତ୍ୟବାଦୀ, ଶାନ୍ତ, ତପସ୍ୱୀ ଓ ପାପଶୂନ୍ୟ ସଂଯମୀ ପୁରୁଷ । ସିଏ ହିଁ ଏକମାତ୍ର ନିୟୋଗ ବିଧି ଜ୍ଞାତ ମହର୍ଷି ।

- ପୁତ୍ର ଭୀଷ୍ମ ! ମୋର ଏବଂ ତୁମର ଅନୁରୋଧକୁ ସେ ଉପେକ୍ଷା କରିବ ନାହିଁ ବୋଲି ବିଶ୍ୱାସ । ଅନୁପମ ତେଜସ୍ୱୀ ବ୍ୟାସ ଅବଶ୍ୟ ମୋ କଥାରେ ଆସି ଆମ ବଂଶରକ୍ଷା କାର୍ଯ୍ୟରେ ସହାୟତା କରିବ । ବିଚିତ୍ରବୀର୍ଯ୍ୟର ଦୁଇଜଣ ବିଧବା ପତ୍ନୀଂକ ଗର୍ଭରୁ ସେ କଲ୍ୟାଣକାରୀ ସନ୍ତାନ ଉତ୍ପନ୍ନ କରି ପାରିବ' ।

ମହିର୍ଷି ବ୍ୟାସଂକ ସୁନାମ ଭୀଷ୍ମ ଆଗରୁ ଶୁଣିଥିଲେ । ସେ ତାଂକ ଉଦ୍ଦେଶ୍ୟରେ ହାତଯୋଡ଼ି କହିଲେ, 'ମାତା ! ଆପଣ ଯାହା ପ୍ରକାଶ କଲେ, ତାହା ସତ୍ୟ ଏବଂ ଧର୍ମଯୁକ୍ତ ।

ଆମର ବଂଶରକ୍ଷା ଉଦ୍ଦେଶ୍ୟରେ ସମଗ୍ର ପ୍ରଜାଙ୍କର ମଙ୍ଗଳ ପାଇଁ ଆପଣ ଭାଇ ବ୍ୟାସଙ୍କୁ ନିମନ୍ତ୍ରଣ କରନ୍ତୁ' ।

ଭୀଷ୍ମଂକ ସହମତିରେ ରାଜମାତା ସତ୍ୟବତୀ ତାଂକର ପ୍ରଥମ ପୁତ୍ର ବ୍ୟାସଦେବଙ୍କୁ ସ୍ମରଣ କଲେ । ସ୍ମରଣ ମାତ୍ରକେ ବ୍ୟାସଦେବ ବେଦପାଠ କରି କରି ସେଠାରେ-ଉପସ୍ଥିତ ହୋଇଗଲେ ।

ପାଲା ଗାୟକଙ୍କ କଥା ସରିଛି କି ନାହିଁ, ଜଣେ ପାଳିଆ ବ୍ୟାସଦେବଙ୍କ ଅଭିନୟ କରି କହି ଉଠିଲେ - 'କୁହ ମାତା ! କି' କାରଣେ ମୋତେ ତୁମ୍ଭେ କରିଲ ସ୍ମରଣ' ?

ଶ୍ରୀପାଳିଆ ନିଜର ଉତ୍ତରୀୟକୁ ମଥାରେ ଦେଇ ମାତା ସତ୍ୟବତୀଙ୍କର ଅଭିନୟ କରି କହିଲେ,

'ସ୍ନେହର ପୁତ୍ର ବ୍ୟାସ ! ଦେଖିନାହିଁ ତୋର ମୁଖ ଅନେକ ଦିନରୁ ।
- କହିଥିଲୁ, ସଂକଟରୁ କରିବୁ ଉଦ୍ଧାର ।
- ଆଜି ଦେଖ, ସଂକଟରେ ପଡ଼ିଛି ଜନନୀ ।
- କି ' କହିବି ପୁତ୍ର ତୋତେ, କୁଳଲଜ୍ଜା କଥା ।
- କହିଲେ ତ କୁଳ କୁଟୁମ୍ବକୁ ଲାଜ, ନକହିଲେ କୁଳ ଭାସି ଯାଉଛି ।

ବ୍ୟାସ : -କୁହ ମାତା ! ତୁମରି ସେବାରେ, ତୁମରି ଆଦେଶ ପାଇଁ ପ୍ରସ୍ତୁତ ମୁଁ ବ୍ୟାସ ।

ସତ୍ୟବତୀ: - ଧନ ମୋର ! ବିଧିର ବିଧାନ କିବା ପୂର୍ବଜନ୍ମ ଫଳେ ।
- ପରାଶର ମୁନି ବରେ ତୋତେ ମୁଁ ପାଇଲି ।
- ଲୋକଲଜ୍ଜା, ନିନ୍ଦିତା ମୁଁ ହେଲି ସମାଜରେ ।
- ତୁହି ମୋର ପ୍ରଥମ ସନ୍ତାନ ! କୃଷ୍ଣ ଦ୍ୱୈପାୟନ ।
- ତୋ ଉପରେ ଅଛି ମୋର ନିଷ୍ଠେ ଅଧିକାର ।
- ମୋ ଗର୍ଭରୁ ଜନ୍ମିଥିଲା, କନିଷ୍ଠ ବିଚିତ୍ରବୀର୍ଯ୍ୟ ।
- ବିଧିରେ ସେ ଥିଲା, ତୋ'ର ସହୋଦର ।

ବ୍ୟାସ : ସେ କଥା ମୁଁ ଜାଣେ ମାତା, ମୋର ତପୋବଳେ ।
- ବିଚିତ୍ରବୀର୍ଯ୍ୟ ରାଜନ ଛାଡ଼ି ମର୍ତ୍ତ୍ୟପୁର ।
- ଏବେ କରୁଛନ୍ତି ବାସ, ସିଏ ସ୍ୱର୍ଗପୁରେ ।
- ଦୁଇ ଯୁବା ପତ୍ନୀ ତାଂକ କରନ୍ତି ରୋଦନ ।

- ରୂପ ଗୁଣରେ ସେ ଦୁହେଁ ଦେବୀ କନ୍ୟା ସମ ।
- ପୁତ୍ର ଆଶା ତାଂକଠାରେ ଏବେ ବି ଜାଗ୍ରତ ।

**ସତ୍ୟବତୀ:** ଧନ୍ୟହେଲି ପୁତ୍ର! ମୋର ମନକଥା ତୁହି କରିଛୁ ପ୍ରକାଶ ।
- ଆଉ ଏକ କଥା ମୋର ଶୁଣ ମନଦେଇ ।
- କୁଳରକ୍ଷା, ରାଜ୍ୟ ରକ୍ଷା ଆମର କର୍ତ୍ତବ୍ୟ ।
- ଜାଣେ ମୁହିଁ, ତୁହି ଏକା ଯୋଗ୍ୟ ଏହି କାର୍ଯ୍ୟେ।
- ଅବଶ୍ୟ ତୁ ଜାଣୁ ପୁଣି ନିୟୋଗର ବିଧି ।
- ଅନୁରୋଧ ମୋର ପୁତ୍ର ! ସହବାସ କର ଦୁଇ କାଶୀ କନ୍ୟା ସାଥେ।
- ରକ୍ଷାକର କୁଳ ପରଂପରା, ସନ୍ତାନ ଉତ୍ପନ୍ନେ ।

**ବ୍ୟାସ :** ମାତା ସତ୍ୟବତୀ ! ଅନୁଭବ କରୁଛି ମୁଁ ତୁମ ବ୍ୟାକୁଳତା ।
- ତୁମ୍ଭ ଆଜ୍ଞା ଯାହା ହେବ ମୋର ଶିରୋଧାର୍ଯ୍ୟ।
- ନିଶ୍ଚୟ ମୁଁ ପୁତ୍ର ଦେବି ତେଜସ୍ୱୀ ପ୍ରବର, କିନ୍ତୁ -
- ଭାତୃପତ୍ନୀ ଦୁହେଁ ହେବେ, ଶୁଦ୍ଧ ବ୍ରତାଚାରୀ ।
- ଏକବର୍ଷେ ପରେ ଯାଇ ହେବେ ମୋର ଯୋଗ୍ୟା ।

**ସତ୍ୟବତୀ :** ଜାଣୁ ତୁହି ରାଜ୍ୟ ଏବେ ହୋଇଛି ଅନାଥ ।
- ରାଜା ବିନା ପ୍ରଜା କେବେ ହୁଅନ୍ତି କି ସୁଖୀ ?
- ଯଥାଶୀଘ୍ର ପୁତ୍ରଟିଏ କର ତୁ ଉତ୍ପନ୍ନ ।

**ବ୍ୟାସ :** ମାତା ! ବ୍ରତ ଦ୍ୱାରା ରାଣୀ ଦ୍ୱୟ ହେବେ ଶକ୍ତିଶାଳୀ ।
- ତେବେ ସିନା ଭୟ ତାଂକ ହୋଇଯିବ ଦୂର ।
- ମୋ ଶରୀର ଗନ୍ଧ ଯଦି ନପାରନ୍ତି ସହି ।
- ତେବେ ନିଶ୍ଚେ ଅମଙ୍ଗଳ ହୋଇବ ତାଂକର ।

**ସତ୍ୟବତୀ:** ଅଛି ମୋ ବିଶ୍ୱାସ ପୁତ୍ର ।
- ଅମ୍ବିକା ଯେ କାଶୀକନ୍ୟା ମହା ଧୈର୍ଯ୍ୟଶୀଳ ।
- ତୋ' ଶରୀର ତେଜ,ଗନ୍ଧ ପାରିବ ସେ ସହି ।
- ଆଜି ତୁହି ତା' ସହିତ କରି ସହବାସ ।
- ସୁପୁତ୍ରଟି ଦାନ କର ଶୀଘ୍ର ତା'ର କୋଳେ ।

**ବ୍ୟାସ :** ଶୁଦ୍ଧଶଯ୍ୟା ପରେ ତୁମେ ରାଣୀଂକୁ ହକାରି ।

- ପ୍ରତୀକ୍ଷା କରିବ ମାତା ମଧ୍ୟରାତ୍ର କାଳେ ।
- ବିହାର କରିବି ନିଶ୍ଚେ ତୁମ୍ଭ ଆଦେଶରେ ।

ତା'ପରେ ଗାୟକ ମହାଶୟ ବୁଝାଇ ଦେଲେ -

- 'ବ୍ୟାସ ଦେବ ସତ୍ୟବତୀଙ୍କୁ ପ୍ରତିଶ୍ରୁତି ଦେଇ ଅନ୍ତର୍ଦ୍ଧାନ ହୋଇଗଲେ। ତା'ପରେ ସତ୍ୟବତୀ ଯାଇ ଅମ୍ବିକା ଦେବୀଙ୍କୁ ସମସ୍ତ କଥା ବୁଝାଇ ଦେଇ କହିଲେ - 'ଭରତ ବଂଶକୁ ରକ୍ଷା କରିବା ଉଦ୍ଦେଶ୍ୟରେ ଆଜି ମୋ ପୁତ୍ର ବ୍ୟାସ ସହିତ ମିଳନ ହୋଇ ଇନ୍ଦ୍ର ସମାନ ତେଜସ୍ୱୀ ପୁତ୍ରଟିଏ ଜନ୍ମ କର। ଏହା ଦ୍ୱାରା ତୋର କୌଣସି ଅଧର୍ମ ହେବନାହିଁ।'

ବହୁ କଷ୍ଟରେ ଦେବୀ ଅମ୍ବିକା ସତ୍ୟବତୀଂକ କଥାରେ ରାଜି ହୋଇ ବ୍ୟାସଦେବଙ୍କୁ ପ୍ରତୀକ୍ଷା କରି ଶୁଦ୍ଧ ଶଯ୍ୟାରେ ବସି ରହିଲେ ।

ସତ୍ୟବାଦୀ ମହର୍ଷି ବ୍ୟାସ ଠିକ୍ ମଧ୍ୟ ରାତ୍ରରେ ଅମ୍ବିକା ଦେବୀଙ୍କ ମହଲରେ ପ୍ରବେଶ କଲେ। ତାଂକର ଶରୀରରେ ଘିଅ ବୋଳା ହୋଇଥିବାରୁ ସେ ଅତ୍ୟନ୍ତ କୁତ୍ସିତ ଦିଶୁଥିଲେ। ତାଂକର ଜଟା ପିଂଗଳ ବର୍ଣ୍ଣ ଓ ଆଖି ଦୁଇଟି ଅଗ୍ନି ପିଣ୍ଡୁଳା ପରି ଦିଶୁଥିଲା । ତାଂକୁ ଦେଖି ଦେବୀ ଅମ୍ବିକା ଅତ୍ୟନ୍ତ ଭୟଭୀତ ହୋଇ ଆଖି ବୁଜି ପକାଇଲେ। ରାଣୀ ଅମ୍ବିକାଙ୍କ ସହିତ ମହର୍ଷି ସହବାସ କରି ନିୟୋଗ ନୀତି ଅନୁସାରେ ବିଦାୟ ନେଲେ ।

ମାତା ସତ୍ୟବତୀ ବାହାରେ ବ୍ୟାସକୁ ଅପେକ୍ଷା କରି ରହିଥିଲେ, ପାଳିଆ ଜଣକ ପୁଣି ଠିଆ ହୋଇପଡ଼ି ଅଭିନୟ ଆରମ୍ଭ କରି କହିଲେ -

**ସତ୍ୟବତୀ:** - କୁହ ବତ୍ସ ! ଅମ୍ବିକା ଗର୍ଭରୁ କିବା ହୋଇବ ସମ୍ଭବ ?

**ବ୍ୟାସ :** - ପୁତ୍ର ମୋର ହେବ ଏକ ତେଜସ୍ୱୀ ପୁରୁଷ।
- ସହସ୍ର ହସ୍ତୀର ବଳ ଥିବ ତା' ବାହୁରେ ।
- ପରାକ୍ରମୀ ବୁଦ୍ଧିମାନ ରାଜା ହେବ ସିଏ ।
- କିନ୍ତୁ ମାତା ! ଅମ୍ବିକା ଦୋଷରୁ ପୁତ୍ର ହୋଇବ ଜନ୍ମାନ୍ଧ ।

**ସତ୍ୟବତୀ :** କୁରୁବଂଶ ରାଜା ପୁଣି ହୋଇବ ଜନ୍ମାନ୍ଧ ?
- ଯଦି କିଛି ନଥାଏ ଉପାୟ,
- ଅନ୍ୟ ଏକ ସୁପୁତ୍ରକୁ କର ତୁ ଉତ୍ପନ ।
- ଏଥିପାଇଁ ଅମ୍ବାଳିକା ହୋଇବ ସୁଯୋଗ୍ୟା ।

**ବ୍ୟାସ :** - ତୁମ ଆଦେଶକୁ ମୁହିଁ କରିବି ସମ୍ମାନ ।

- ଅମ୍ବାଳିକା କୋଳେ ଦେବି - ଅନ୍ୟ ଏକ ପୁତ୍ର ।

**ସତ୍ୟବତୀ:** - ଯାଅ ପୁତ୍ର! ଅମ୍ବାଳିକା ରାଣୀଙ୍କୁ ମୁଁ କରାଏ ସମ୍ମତ ।

- ମଧ୍ୟ ରାତ୍ରେ ତା' ପୁରକୁ କରିବୁ ଗମନ ।

ଗାୟକ ମହାଶୟ ଏଥର ମଧୁର ସ୍ୱରରେ ଗୀତରେ ଗାଇଦେଲେ -

*'ମାତାଙ୍କ ଆଦେଶେ-*
*ବ୍ୟାସ ଅନ୍ତର୍ଦ୍ଧାନ,*
*ମଧ୍ୟରାତ୍ରେ ଆସି-*
*ହୋଇଲେ ମିଳନ ।*
*ବ୍ୟାସଦେବ ରୂପ-*
*ତେଜ ଦେଖି ରାଣୀ ,*
*ଚକ୍ଷୁ ଖୋଲି ଥିଲେ-*
*ଆଗ କଥା ଜାଣି ॥*
*ମହର୍ଷି ତେଜରେ-*
*ହୋଇଲେ ଆତୁର,*
*ରାଣୀଙ୍କର ମୁଖ-*
*ଦିଶିଲା ପାଣ୍ଡୁର' ।*

-ପୂର୍ବଥର ପରି ଏଥର ମଧ୍ୟ ରାଜମାତା ସତ୍ୟବତୀ ବାହାରେ ଅପେକ୍ଷା କରି ରହିଥିଲେ ।

ଶ୍ରୀପାଳିଆ ଜଣକ ପୁଣି ଅଭିନୟ ଆରମ୍ଭ କରି କହିଲେ -

**ସତ୍ୟବତୀ:** - ପୁତ୍ର ମୋର ! ଅମ୍ବାଳିକା ଭବିଷ୍ୟତ କୁହ ମୋ ଆଗରେ ।

**ବ୍ୟାସ :** - ମିଳନ ସମୟେ ରାଣୀ ହେଲେ, ପାଣ୍ଡୁବର୍ଣ୍ଣା ।

- ତେଣୁ ତା'ର ପୁତ୍ର ହେବ, ବିବର୍ଣ୍ଣ ପାଣ୍ଡୁର ।

- ପାଣ୍ଡୁନାମେ ଖ୍ୟାତ ହେବ, ସେ ରାଜ କୁମାର ।

**ସତ୍ୟବତୀ:** - (କପାଳରେ ହାତ ମାରି) କେଡ଼େ ଅଭାଗିନୀ ମୁହିଁ, ସୁଖ ମୋର ନାହିଁ ।

- ସକଳ ତପସ୍ୟା ମୋର ବୃଥା ହେଲା ସିନା ।

- ଏକ ପୁତ୍ର ଅନ୍ଧ ହେବ, ଅନ୍ୟ ଏକ ପାଣ୍ଡୁ ।

- ସୁପୁତ୍ର କି ମୋ ବଂଶରେ ହେବନାହିଁ ଜନ୍ମ ?

- ମାତାର ଏ' ନିବେଦନ !
- ବ୍ରତାଚାରୀ ଅମ୍ବିକାକୁ କରିବୁ ଗ୍ରହଣ ।
- ତା'ଠାରୁ ତୃତୀୟ ପୁତ୍ର କରିବୁ ଉତ୍ପନ୍ନ ।

ଗାୟକ ମହାଶୟ ପୁଣି ଗୀତରେ ଗାଇଲେ :-

*" ତଥାସ୍ତୁ ତଥାସ୍ତୁ କହି-*
*ଚାଲିଗଲେ ବ୍ୟାସ,*
*ବ୍ରତାଚାରୀ ଅମ୍ବିକାର-*
*ପୂରିଲା ବରଷ ।*
*ସତ୍ୟବତୀ ହକାରିଲେ-*
*ପୁତ୍ର ବ୍ୟାସଦେବ,*
*ତୃତୀୟ ସନ୍ତାନ ତାଂକ-*
*ହୋଇବ ସମ୍ଭବ ॥*
*ସୁମରିଲେ ରାଣୀ, ତାଂକ-*
*ରୂପ, ଗନ୍ଧ, ତେଜ,*
*ରୂପସୀ ଦାସୀକୁ ନେଇ-*
*ସଜାଇଲେ ଶେଯ ।*
*ଦାସୀ ସଂଗେ ବ୍ୟାସଦେବ-*
*ହୋଇଲେ ମିଳନ,*
*ବିଦୁର ଧର୍ମାତ୍ମା ତହୁଁ-*
*ହୋଇଲେ ଜନମ ।*
*କୁଳରକ୍ଷା ହେଲା -*
*ଏବେ ଭରତ ବଂଶର,*
*କୁଳରକ୍ଷା ପାଇଁ ଏହା -*
*ଧର୍ମର ବିଚାର" ॥*

ଏକ ଲୟରେ ଶ୍ରୋତାମାନେ ମହାଭାରତର ଅମୃତରସ ପାନ କରୁଥିଲେ ।

କୁଳରକ୍ଷା ପାଇଁ କିଭଳି ମହର୍ଷି ବିଧବା ରାଣୀମାନଂକୁ ଗ୍ରହଣ କଲେ, ସେ କାହାଣୀଟି ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ମହାପୁରାଣ ମହାଭାରତର କାହାଣୀକୁ କିଏ ବା ଅବିଶ୍ୱାସ କରି ପାରିବ ?

- ହଠାତ୍ ଜ୍ୟୋତିର ଭାବୀଶାଶୂ ଉଠିପଡ଼ି କହିଲେ, 'ସମୁଦୁଣୀ ଆମକୁ ଏବେ ବିଦାୟ ଦିଅ । ଆପଣଂକ ଦୟାରୁ ଆଜି ସୁନ୍ଦର କାହାଣୀଟିଏ ମହାଭାରତରୁ ଶୁଣିବାକୁ ପାଇଲୁ । ବହୁତ ବଢ଼ିଆ - ଚମତ୍କାର କାହାଣୀ ।'

ସମୁଦୁଣୀ କହିଲେ - 'ଏମିତି କାହାଣୀ ତ ପୁରାଣରେ ଭର୍ତ୍ତି ହୋଇ ରହିଛି, ତାକୁ ପଢ଼ିବା ଆଉ ଶୁଣିବା ଲୋକ ହିଁ ଧନ୍ୟ ହୁଅନ୍ତି । ଦେଖୁନା -ଏ' ପାଲାବାଲା କେମିତି ରସେଇ, ବସେଇ, ହସେଇ କେତେ ଲୋକଙ୍କୁ ଟାଣିକି ରଖିଛନ୍ତି । କେତେବେଳେ ନାଟକ ଚାଲିଛି ତ କେତେବେଳେ ଗୀତ, ପୁଣି କେତେବେଳେ ଠିକେ ଠିକେ ସରଳ ଭାଷାରେ ଗାୟକ ଲୋକଙ୍କୁ ବୁଝେଇ ଦଉଛନ୍ତି । ସତରେ ଏ' ପାଲାବାଲାଙ୍କୁ ମାନିବାକୁ ହେବ' ।

- ଧୀରେ ଧୀରେ ଦି' ସମୁଦୁଣୀ ଉଠି ଘର ଭିତରକୁ ଗଲେ । ଯେଉଁମାନେ ବାହାରୁ ଆସିଥିଲେ, ସେମାନେ ତାଂକୁ ଦେଖି ମଞ୍ଚ ପାଖରୁ ଚାଲି ଆସିଲେ । ଜ୍ୟୋତିକୁ ଆଶୀର୍ବାଦ କରି ସମସ୍ତେ ଗାଡ଼ିରେ ବାହାରିଗଲେ ।

ପାଲା ସେମିତି ସାରାରାତି ଚାଲିଥାଏ । ଜ୍ୟୋତି ଆଉ ପାଲା ମଣ୍ଡପ ପାଖକୁ ଗଲାନାହିଁ । ତା' ବୋଉ ସାଂଗରେ ଘରେ ବସି ଅନେକ ସମୟ ପର୍ଯ୍ୟନ୍ତ ପାଲା ବିଷୟବସ୍ତୁ ଉପରେ ଆଲୋଚନା କଲେ । ଭାବୀଶାଶୂ ଓ ପୁଅର ମାମୁ ତଥା ଅନ୍ୟ ଲୋକମାନଙ୍କ ବିଷୟ କଥାବାର୍ତ୍ତା ହେଉ ହେଉ ରାତି ପାହିଗଲା । ସନାତନ ପାଲା ଦେଖିସାରି ଘରକୁ ଫେରି ଦେଖିଲେ, ମା' ଝିଅ ଦୁହେଁ, ଗପି ଚାଲିଛନ୍ତି ।






ମଧୁପୁର ଗାଆଁର ଅଧିକାଂଶ ଲୋକେ କାଲି ଶୋଇ ପାରି ନଥିଲେ । କେତେଜଣ ବୁଢ଼ା-ବୁଢ଼ୀ ଆଉ ଛୋଟପିଲା କିମ୍ବା ବେରସିକ, ଅଳସୁଆ ଲୋକ ହିଁ ପାଲା ଦେଖି ନାହାନ୍ତି । ଆଖ ପାଖ ଗାଁ'ରୁ ବି କେତେଜଣ ପାଲାପ୍ରେମୀ ନାମକରା ପାଲା ଗାୟକଙ୍କ ନାଁ' ଶୁଣି ମାଡ଼ି ଆସିଥିଲେ । ଜ୍ୟୋତି ଘରକୁ ଆସିଥିବା ସମସ୍ତ ବନ୍ଧୁ ବାନ୍ଧବଙ୍କୁ ହିଁ ସବୁଠୁ ବଡ଼ ସୁଯୋଗ ମିଳିଥିଲା । ତେଣୁ ଯିଏ ଯୁଆଡ଼େ ସୁବିଧା ପାଇଲେ, ଗାଧୁଆ-ଅଗାଧୁଆ, ଖିଆ-ଅଖିଆ ଅବସ୍ଥାରେ ଶୋଇ ପଡ଼ିଛନ୍ତି ।

ଜ୍ୟୋତି ବୋଉ ଆଖିକୁ କିନ୍ତୁ ନିଦ ନାହିଁ । ଏଣେ ସନାତନ ପଖାଳ ମୁଠେ ଖାଇ ଦେଇ ଘରୁ ବାହାରି ଗଲେଣି । ଦୁନିଆ ଯାକର କାମ । ନାହାକ, ବ୍ରାହ୍ମଣ, ଗୋସେଇଁ, ବାରିକ, ଧୋବା, ମାଳି, ସାଇ ପଡ଼ିଶାଙ୍କଠାରୁ ଆରମ୍ଭ କରି ଦୂରବନ୍ଧୁ, ପରିଚୟ, ସୂର୍ଯ୍ୟ ମୈତ୍ରଘର ସମସ୍ତଙ୍କୁ ତ ଖୋଜି ଲୋଡ଼ି ଡାକିବାକୁ ପଡ଼ିବ ।

ବାହାଘର ନୁହେଁ ତ ବୁହାଘର । ଯେତେ ପ୍ରକାର ବ୍ୟବସ୍ଥା କରିଥିଲେ ବି ପୁଣି ଅବ୍ୟବସ୍ଥା ଦେଖାଦେବ । ଗୋଟାଏ ଗୋଟାଏ ଜିନିଷ ପାଇଁ ବଜାରକୁ ତିନିଥର, ପାଞ୍ଚଥର ଦୌଡ଼ିବାକୁ ପଡ଼ିବ ।

ଯାହାକୁ ଯେତେ ଦେଲେ ବି ସିଏ ଅସନ୍ତୋଷ ହୋଇ କହୁଥିବ - 'ହେଲାନାହିଁ ବାବୁ ! ବାହାଘର କ'ଣ ପ୍ରତିବର୍ଷ ହଉଛି । ଜୀବନରେ ତ ତମେ ଥରେ ଦବ, ଆମେ ଥରୁଟିଏ ନବୁ । ଆମେ ତ ତମରି ହାତ ଟେକାକୁ ଅନେଇ ପଡ଼ିଛୁ । ଯାହା ଦବାର ଏହି ଥରକ ଦବ । ଆଉ କିଛି ଦିଅ ବାବୁ' ।

ଲୁଗା-ପଟା, ଭଲ-ମନ୍ଦ, ଖାଇବା-ପିଇବା, ରୋଷେଇଆ, ହଣ୍ଡା-କଡ଼େଇ, ଟେଣ୍ଟବାଲା ଏମାନଙ୍କୁ ଆଗତୁରା ନକହିଲେ କି ଅଗ୍ରୀମ ନଦେଲେ, ଠିକ୍ ସମୟରେ ଏମାନେ ଧୋକା ଦେବେ । ଯେଉଁଠୁ ଅଗ୍ରୀମ ବେଶି ପାଇଯିବେ, ସେଠିକି ଚାଲିଯିବେ ।

ଲୋଭରେ ଦିଇଟା/ ତିନିଟା ଜାଗା ପାଇଁ ଅର୍ଡ଼ର ନେଇ ଯାଇଥିବେ । କାମଚଳା ଲୋକଙ୍କୁ ପଠେଇ ଦେଇ ଅସଲ ବେଳକୁ ହଇରାଣ କରିବେ ।

- ଏଇ କେଇଟା ଦିନରେ ଆମ ସମାଜର ସବୁ ଚଳଣି ବଦଳି ଗଲାଣି । ଦଶ-ପନ୍ଦର ବର୍ଷ ଆଗରୁ ସାହି ପଡ଼ିଶା, ଗାଁ'ର ଲୋକେ ହିଁ ଭୋଜି-ଭାତ, ବାହାଘର କାମ, ବାଉଁଶ ବନ୍ଧାରୁ ଆରମ୍ଭ କରି ପୁରି ଛାଣିବା କାମ ସବୁ ବଳେ ବଳେ କରି ପକାଉଥିଲେ । ଟେଣ୍ଟବାଲା କୋଉଠି ଥିଲେ ଯେ-ଟେବୁଲ ଚେୟାର, ରଂଗ ବେରଂଗ କପଡ଼ା ଟାଙ୍ଗିବେ ? ସେହି ଗାଁ' ଭାଗବତ ଘରେ ଥିବା ପାଲ କେତେଖଣ୍ଡ, ଆଉ ରଙ୍ଗିନ୍ ଚାନ୍ଦୁଆ ଖଣ୍ଡେ ହିଁ ଆମ ଗାଁ'ର ସବୁ ବାହାଘର କାମ ଚଳେଇ ଦେଉଥିଲା । ବିଶ୍ୱାଳ ଘର, ସାହୁଘର, ରାଉତ ଘର ବୁଲି ପଡ଼ିଲେ, ତାଙ୍କରି ବାଉଁଶରେ ବନ୍ଧାବନ୍ଧି କାମ ହେଇ ଯାଉଥିଲା । ଗାଁ' ବାରିକ ବେଦୀ ବାନ୍ଧୁଥିଲା । ଧୋବା ତୋଟାରୁ କାଠ ହାଣି ଜମା କରି ଦେଉଥିଲା । ଗାଁ'ର ଯୁବକ ସଂଘ ପିଲାମାନେ ଆମ ପିଲାଂକ ସାଂଗରେ ମିଶି ସଜାସଜି କାମ କରି ଦେଉଥିଲେ, ଝିଅର ସାଂଗମାନେ ଆସି ଘର କାମରେ ସାହାଯ୍ୟ କରୁଥିଲେ । ଏମିତି ବାହାଘର, ପ୍ରତ୍ୟେକ ଭଲ-ମନ୍ଦ କାମ ସୁରୁଖୁରୁରେ ହେଇ ଯାଉଥିଲା । ଏବେ ହଠାତ୍ ସବୁ ବଦଳି ଯାଇଛି ।

ରୋଷେଇୟା ଯୋଗାଡ଼ କରିବାକୁ ଗଲା ବେଳକୁ ସିଏ କହୁଛି - 'ଟେଣ୍ଟବାଲାଙ୍କୁ କହିବେ, 'ପାଞ୍ଚଟା ବଡ଼ ହାଣ୍ଡି, ପଚିଶିଟା ବାଲତି, ତିନିଟା ବଡ଼ କଡ଼େଇ ସାଂଗକୁ ଆଉ ଯାହା ଜିନିଷ ସବୁ ଭଡ଼ାରେ ଦେଇଦେବ । ମୁଁ ପାଞ୍ଚଟା ହେଲପର ସାଂଗରେ ଧରି ପହଞ୍ଚିବି । ଯେତିକି ଲୋକ ଖାଇବେ, ମୁଣ୍ଡପିଛା ଆମକୁ ତିନିଟଂକା ହିସାବରେ ଦେବେ । ଆଇଟମ୍ କ'ଣ କ'ଣ ହବ । ଆମକୁ ଖାଲି ତାଲିକାଟି ଦେଇ ଯାଆନ୍ତୁ । ଆପଣଂକର ସଉଦା-ପତ୍ର ପାଇଁ ଆମେ ଆପଣଂକୁ ତାଲିକା ଦେଇଦେବୁ । ବେହେରା ଦୋକାନରେ ଆପଣ ତାଲିକା ଦେଇଦେଲେ, ସେ ଗାଡ଼ି କରି ସବୁ ଜିନିଷ ନେଇ ଆପଣଙ୍କ ଘରେ ଜମା କରିଦେଇ ଆସିବ । ଆମକୁ ଆଗ ହଜାରେ ଟଂକା ଅଗ୍ରୀମ ଦେଇ ଯାଆନ୍ତୁ, ଆଉ ଥରେ ବାହାଘର ଆଗ ଦିନ ମୋତେ ଟିକେ ମୋ ମୋବାଇଲରେ ମନେ ପକାଇ ଦେବେ' ।

ସନାତନ ରୋଷେଇୟାର କଥାଶୁଣି କାନମୁଣ୍ଡା ଆଉଁସି ହେଲେ । ମୁଣ୍ଡପିଛା ରୋଷେଇ ଖର୍ଚ୍ଚ ତିନିଟଂକା । ମାନେ, ହଜାରେ ଲୋକଙ୍କୁ ଖାଇବାକୁ ଦେଲେ, ରାନ୍ଧୁଣିଆ ନେବେ ତିନି ହଜାର ଟଂକା । ଉପାୟ ନାହିଁ । ଆଗ ସୁବିଧା ଆଉ କୋଉଠି ଅଛି ଯେ, ଗାଁ' ଲୋକେ ମିଳିମିଶି କାମଟାକୁ ଉଠେଇ ନେବେ !

ସେ ଭାବିଥିଲେ, ଏକମାତ୍ର ଅଲିଅଳ କନ୍ୟା ଜ୍ୟୋତିର ବାହାଘରକୁ ହଜାରେ ସରିକି ବଲ୍କଳଧାରୀ ଓ କୌପନୀଧାରୀ ବାବାଂକୁ ଭିକ୍ଷା ଦେବେ । ଆଖପାଖ ପାଞ୍ଚଖଣ୍ଡ ଗାଁ'ର ପିଲା-ଛୁଆଂକଠାରୁ ଆରମ୍ଭ କରି ବୁଢ଼ା ବୁଢ଼ୀଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ଭୋଜିକୁ ଡାକିବେ । ଏମାନେ ତିନି ହଜାରରୁ କମ୍ ହେବେ ନାହିଁ । ଥରେ ବାହାଘର କରିବାକୁ ସୁଯୋଗ ମିଳିଛି । ହଉ ଖର୍ଚ୍ଚ, ଲୋକେ କହିବେ ତ ସନାତନ ଭୋଜିଭଳି ଭୋଜିଟିଏ ଦେଇଥିଲା । କିନ୍ତୁ ଏ' ରାନ୍ଧୁଣିଆଙ୍କ ଲମ୍ବା ଚୱଡ଼ା କଥା ଶୁଣି ତାଙ୍କ ମନ ଘର ଧରି ନେଇଗଲା । ହେଲେ, ଉପାୟ୍ କାହିଁ ? ଯାହା ହେବାର ହେବ । ତାଙ୍କରି ଶରଣାପନ୍ନ ହୋଇ ତାଲିକା ପ୍ରସ୍ତୁତ ପାଇଁ ଅଗ୍ରୀମ ହଜାରେ ଟଂକା ଦେଇ ଆସିଲେ ।

ଆଜି ଟେଣ୍ଟବାଲାକୁ ଅଗ୍ରୀମ ଦେବାକୁ ପଡ଼ିବ । ସେ କହିଛି, 'ପାଲ ବନ୍ଧା କାମର ଦାମ୍ ଅଲଗା । କପଡ଼ା ୱାଲ୍ ଠିଆ କରେଇ ଦେବୁ, ସେ ସବୁ ସ୍କୋୟର୍ ସି.ଏମ୍.ରେ ହିସାବ ହେବ । ମେନ୍ ଗେଟ୍ , ସାଇଡ୍ ଗେଟ୍, ଲିଚୁ ଲାଇଟ୍ ଇଏ ସବୁ ମଧ୍ୟ ସ୍କୋୟର୍ ମିଟରରେ ହିସାବ ହେବ । କ'ଣ କେମିତି ଆଉ କେଉଁଠି କାମ ହେବ, ସେତିକି କହି ଦେଇ ଚାଲି ଯାଆନ୍ତୁ । ବାହାଘର ଆଗ ଦିନରୁ ସେ ସବୁ ରେଡ଼ି ହୋଇ ହେଇ ଯାଇଥିବ, ଆପଣ ବାଉଁଶ, ପାଲ, ଦଉଡ଼ି ଏ'ସବୁ ଚିନ୍ତା କରନ୍ତୁ ନାହିଁ । କେତେଜଣ ଖାଇବେ, ବରଯାତ୍ରୀ କେତେଜଣ ଆସିବେ, ବେଦୀ କେଉଁ ଡ଼ିଜାଇନ୍‌ରେ, କେତେ ସ୍କୋୟର, ମିଟରରେ ହେବ, ସେତିକି ଆମକୁ କହି ଦିଅନ୍ତୁ । ହାଣ୍ଡି - ଡ଼େକ୍‌ଚି ଟେବୁଲ୍ ଏ'ସବୁ ଆମ ପାଖରେ ଅଛି, ରୋଷେଇୟାଙ୍କ ତାଲିକା ଅନୁସାରେ ଆମେ ପଠେଇ ଦେବୁ । ଆପଣ ଗାଡ଼ି ଭଡ଼ା, ମାନେ-ଟ୍ରାନସ୍‌ପୋର୍ଟ ଖର୍ଚ୍ଚଟା ଅଗ୍ରୀମ ଦୁଇ ହଜାର ଦେଇ ଯାଆନ୍ତୁ । ସବୁ କାମ ଠିକ୍ ହେଇଯିବ । ଆପଣଂକ ହାତ ଗୋଡ଼ରେ ଧୂଳିମଳି ଲାଗିବ ନାହିଁ । ଜିନିଷ ପତ୍ର କିଛି ନଷ୍ଟ ହେବ ନାହିଁ । ଆମର କୋଡ଼ିଏ ପଚିଶ ଲୋକ ଆପଣଂକ ପାଖେ ପାଖେ ଥିବେ । ସେମାନେ ଆପଣଂକୁ ସବୁ କାମରେ ସହଯୋଗ କରିବେ । ଲାଇନ୍ ଚାଲିଗଲେ, ସଂଗେ ସଂଗେ ଜେନେରେଟର୍ ଚାଲିବ । ହାଲୁକା ମିଉଜିକ୍ ପାଇଁ ଆମେ ଅଲଗା ମାଇକ୍ ବ୍ୟବସ୍ଥା ବି କରିଛୁ । ଯେତେ ଦୂର ପର୍ଯ୍ୟନ୍ତ, ଯେତେ ପ୍ରକାର ଲାଇଟ୍ ଦରକାର, ସେ ସବୁ ସରଂଜାମ ଆମ ପାଖରେ ଅଛି । ଖାଲି ଓ.କେ କଲେ, କାମ ହୋଇଯିବ' ।

ସନାତନ ଟେଣ୍ଟବାଲାଙ୍କ କଥା ଚାତୁରୀକୁ ବେଶ୍ ଉପଭୋଗ କରୁଥିଲେ । ଦୀର୍ଘ ଶ୍ୱାସ ପକେଇ ଭାବିଲେ, 'ଚିନ୍ତାକରି ଲାଭ କ'ଣ ? ଏବେ ତ ଏଇମିତି ଚାଲିଛି । ସେ ନିକଟରେ ଗୋଟଏ ଦିଂଟା ବାହାଘର ଭୋଜିକୁ ଯାଇଛନ୍ତି । ଏଇ ଟେଣ୍ଟବାଲା ହିଁ ସବୁ ସଜାସଜି କାମ କରିଥିଲା । ଏମାନେ ବେପାର ଖୋଲିବା ଦିନଠୁଁ ଆଉ କ'ଣ ଗାଁ'

ଟୋକା କୌଣସି କାମରେ କାହାକୁ ସାହାଯ୍ୟ କରୁଛନ୍ତି ? ବରଂ ଉପଦେଶ ଦେଇ କହି ଦେଉଛନ୍ତି - 'ଆପଣ ଟେଣ୍ଟବାଲାକୁ ଖବର ଦଉ ନାହାନ୍ତି, ସେମାନେ ଧଡ଼୍‌ଧାଡ଼୍ କରି ସବୁ କାମ କରିଦେଇ ଚାଲିଯିବେ । ହାତ ଗୋଡ଼କୁ ଲାଗିବ ନାହିଁ । କାହାକୁ ଖୋସାମତ କରିବାକୁ ପଡ଼ିବ ନାହିଁ ।

ଆଜିକାଲି ଆଉ କିଏ କାହାର କାମ କରି ଦେଉଛି ଯେ ? ସେ ଯୁଗ ଗଲାଣି । ଏବେ ଖାଲି -ପଇସା ଫେଙ୍କୋ, ତମାସା ଦେଖୋ ।"

- ଛାଡ଼, ଉପାୟ କିଛି ନାହିଁ । ଯାହା ପଇସା ଖର୍ଚ୍ଚ ହେବାର ହଉ । କାମଟି ସୁରୁଖୁରୁରେ କେମିତି ହେଇଯାଉ । ମହିମା ଗୋସାଇଁଙ୍କ ନାମ ଉଚ୍ଚାରଣ କରି ଅଗ୍ରୀମ ଦୁଇ ହଜାରେ ଟଂକା ଦେଇ ସନାତନ ସେଠାରୁ ବିଦାୟ ନେଲେ ।

- ପକେଟରୁ ନନାଂକ ତାଲିକାଟି କାଢ଼ି ଦେଖିଲେ ସନାତନ । ମନକୁ ମନ କହିଲେ - 'ଓଃ ! ଏ'ସବୁ ଜିନିଷ ମିଳିବ କେଉଁଠୁ ? ଇଏ କି' କିଟିମିଟିଆ ଜିନିଷ ସବୁ ହବ କ'ଣ ? ଏ' କାମ ମୋ ଦ୍ୱାରା ହେଇ ପାରିବ ନାହିଁ । ଜ୍ୟୋତିର ମଉସା ହିଁ ଏ ସବୁ ଜିନିଷ ଠିକ୍ ଯୋଗାଡ଼ କରି ପାରିବେ ।'

- ବାଟରେ ସନାତନଙ୍କ ଭେଟ ହୋଇଗଲା, ଲୁଗା ଦୋକାନୀ ବନମାଳୀଙ୍କ ସହିତ । ସେ ହିସାବରେ ମଉସା ହେବେ । ଜ୍ୟୋତିର ବାହାଘର କଥା ଆଗରୁ ଜାଣିଛନ୍ତି । ଲୁଗାପଟା ଯାହା ଦରକାର, ସବୁତକ ତାଂକରି ଦୋକାନରୁ ଆସିବ । ସେ କହିଥିଲେ, - 'ତାଂକୁ ତାଲିକା ଫାଲିକା ଦରକାର ନାହିଁ'।

ସିଏ ତ ଦି' ଦିଇଟା ଝିଅ ବାହା କରେଇଛନ୍ତି, ତାଂକୁ କ'ଣ ଅଜଣା ଅଛି ଯେ ? ଯାହା ଦରକାର, ସବୁ ସେ ଠିକ୍ ସମୟରେ ଯୋଗାଇ ଦେବେ । ଝିଅ ପାଇଁ ଭଲ ପଲଙ୍କ ଖଣ୍ଡେ ସିଏ କାବରା ଗାଁ'ରୁ ତିଆରି କରେଇ ଦେଇଥିଲେ । ଠିକ୍ ସମୟରେ ସେ ଖଣ୍ଡକ କାମରେ ଲାଗି ପାରିଲା ବୋଲି ସନାତନ ମନେ ପକେଇ ତାଂକ ନିକଟରେ କୃତଜ୍ଞତା ଜଣାଇଲେ ।

ଝିଅର ଶାଶୂଘର କଥା ତା' ମାମୁଙ୍କର ବ୍ୟବହାର ଆଉ ପୁଅର ରୂପ, ଗୁଣ ସଂପର୍କରେ ବେଶ୍ ଦି'ଜଣ ଗପସପ ହେଲେ । ଦିନଯାକ ଏପଟ ସେପଟ ହୋଇ ସନାତନ ହାଲିଆ ହେଇ ପଡ଼ିଥିଲେ । ଘରକୁ ଆସି ମୁଠାଏ ଖାଇ ଦେଇ ଗଡ଼ି ପଡ଼ିଲା ବେଳକୁ ଚାଇଁ ନିଦ ମାଡ଼ି ଆସିଲା ।

- ତାଂକ ଆଖିରେ ନାଚି ଉଠିଲା, ଦୁଇଟା ପାଟ ହାତୀ ଝୁଲି ଝୁଲି ଆସୁଛନ୍ତି । କେତେ ପ୍ରକାର ରଂଗ ବେରଂଗ କପଡ଼ାରେ ସେମାନେ ସଜା ହୋଇଛନ୍ତି । ଶୁଣ୍ଢରେ ମୋଟା ମୋଟା ଦୁଇଟା ବଡ଼ ଚାମର ଧରି ଝାଡୁଛନ୍ତି । ଲାଗୁଛି ସତେ ଯେମିତି ସେମାନେ

କୌଣସି ଦେବସଭାକୁ ଯାଉଛନ୍ତି ।

ହଠାତ୍ ହାତୀ ଦୁଇଟା ବାଟଭାଙ୍ଗି ଚାଲିଲେ, ତାଂକରି ଘର ଆଡ଼କୁ । ଜ୍ୟୋତି ସେମାନଂକୁ କୁଲାରେ ଚାଉଳ ଆଣି ଖାଇବାକୁ ଦେଲା । ଗାଁ' ଲୋକମାନେ ହାତୀକୁ ଦେଖି ଭୟଭୀତ ହେଉଛନ୍ତି । ହଠାତ୍ ଗୋଟାଏ ହାତୀ ଜ୍ୟୋତିକୁ ତା' ଶୁଣ୍ଢରେ ଟେକି ନେଇ ପିଠିରେ ବସେଇ ଦେଲା । ଜ୍ୟୋତି ହସି ହସି ଗଡ଼ି ଯାଉଛି । ତା' ବୋଉ ଚିତ୍କାର କରି କହୁଛି - ପଡ଼ିଯିବୁ ପଡ଼ିଯିବୁ । ଓହ୍ଲେଇ ପଡ଼ ।

ପୁଣି ହାତୀ ଆଗରେ ଦୁଇ ହାତ ଯୋଡ଼ି ନିବେଦନ କରୁଛି - 'ମୋ ଛୁଆକୁ ମୋତେ ଫେରାଇ ଦିଅ ।' ଜ୍ୟୋତି ଟିକେ ବି ଡ଼ରୁନାହିଁ । ତା' ବୋଉ ଜ୍ୟୋତିର ହାତକୁ ଧରି ଟାଣି ଆଣିଲା । ଖୁବ୍ ଜୋରରେ ଜ୍ୟୋତି ତଳେ କଚାଡ଼ି ହୋଇ ପଡ଼ିଛି । ହାତୀ ଦୁଇଟା ଅନ୍ତର୍ଦ୍ଧାନ ହୋଇଗଲେ । ଜ୍ୟୋତି ବିକଳ ହୋଇ କାନ୍ଦୁଛି ।'

ଏତିକି ବେଳେ ନିଦ ଭାଙ୍ଗିଗଲା । ଦେହଟା ବରଡ଼ା ପତ୍ର ଭଳି ଥରୁଛି । ପାଟିରୁ କଥା ବାହାରୁ ନାହିଁ । ଇଏ କି' ଦୁସ୍ୱପ୍ନ ! ଇଏ ସ୍ୱପ୍ନଟା କାହିଁକି ସେ ଏମିତି ଦେଖିଲେ । ମନଟା ତାଂକର ଘାଣ୍ଟି ଚକଟି ହେଲା । ଜ୍ୟୋତି ବୋଉକୁ ସ୍ୱପ୍ନ କଥା କହିଲେ, ସେ ଅର୍ଥକୁ ଅନର୍ଥ କରି କେତେ କ'ଣ କହିବ । କନ୍ଦାକଟା ଚାଲିବ । ତେଣୁ ସନାତନ ମନକୁ ଦୃଢ଼ କରି ମନେ ମନେ ମହିମା ଗୋସାଇଁଙ୍କୁ ସ୍ମରଣ କଲେ ।

ସ୍ୱପ୍ନର ଭୟଟା ସନାତନଙ୍କୁ ଜାବୁଡ଼ି ରଖିଥାଏ । ସେ ସଂଧ୍ୟା ବେଳକୁ ଚାଲିଲେ - ମଠକୁ । ନିରାକାର ବାବାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ସନାତନ ଜ୍ୟୋତିର ବାହାଘର ପ୍ରସ୍ତୁତି ସଂପର୍କରେ ସୂଚନା ଦେଲେ । କଥା ଛଳରେ ସ୍ୱପ୍ନର ବୃତ୍ତାନ୍ତ ବର୍ଣ୍ଣନା କରି ଏହାର କାରଣ ଓ ନିରାକରଣ ସଂପର୍କରେ ପରାମର୍ଶ ମାଗିଲେ ।

ନିରାକାର ବାବା ଆଖିବୁଜି ମହିମା ଗୋସ୍ୱାମୀଙ୍କୁ ସ୍ମରଣ କରି କହିଲେ, 'ବାବା ସନାତନ ! ସ୍ୱପ୍ନ ହେଉଛି, ଆମ ଅବଚେତନ ମନର ଦୃଶ୍ୟପଟ୍ଟ । ମଣିଷର ମନ ବଡ଼ ଚଞ୍ଚଳ । ଦେହ ସିନା ଥକିଯାଏ, କିନ୍ତୁ ମନ ଥକେନାହିଁ । ସେ ତା' କାମ କରି ଚାଲିଥାଏ । ଦେହ ଓ ମନ ଏକ ହେଲେ - ବାସ୍ତବ କାର୍ଯ୍ୟ ସମ୍ଭବ ହୁଏ । କେବଳ ଦେହ କିମ୍ବା ଏକୁଟିଆ ମନ କିଛି କାମ କରି ପାରନ୍ତି ନାହିଁ । ତମେ ରାତ୍ରି ଅନିଦ୍ରା ହୋଇ ପୁରାଣର କାହାଣୀ ଶୁଣିଛ, ତା'ପରେ ଦିନ ଯାକ କଠିଣ ପରିଶ୍ରମ କରିଛ । ତେଣୁ ଏଭଳି ସ୍ୱପ୍ନ ଆସିବା ସ୍ୱାଭାବିକ କଥା ।'

- ଏଥିପାଇଁ ବ୍ୟସ୍ତ ହେବାର କିଛି କାରଣ ନାହିଁ । ତମେ ତ ଗୁରୁଙ୍କର ଶରଣ ପଶି ସାରିଛ, ତାଂକ ଉପରେ ସବୁ ଛାଡ଼ିଦିଅ । ମୁଁ ଜାଣେ, ଜ୍ୟୋତିର ଜୀବନରେ ଗୋଟାଏ ଗୁରୁତର ଦୋଷ ରହିଛି, କିନ୍ତୁ ସେ ଦୋଷକୁ କେହି ଦୂର କରି ପାରିବେ ନାହିଁ ।

- 'କପାଳ ଲିଖନ, ପ୍ରଭୁଙ୍କ ଶରଣ' । ଏହା ବ୍ୟତୀତ ଆଉ କିଛି ନାହିଁ । ତମର କାମ ବହୁତ । ଯାଅ ଯୋଗାଡ଼ରେ ଲାଗିପଡ଼ । ମନ ସ୍ଥିର କରି କାମ କର । ରାତିରେ ଭଲ କରି ବିଶ୍ରାମ ନିଅ । ସବୁ ଠିକ୍ ହୋଇଯିବ । ଗୁରୁ ମହିମା ଅଲେଖ ଭକ୍ତର ମନବାଞ୍ଛା ନିଶ୍ଚୟ ପୂରଣ କରିବେ ।

ସନାତନ ବାବାଂକୁ ଶରଣ ଜଣାଇ ଘରକୁ ଫେରି ଦେଖେ ତ ଜ୍ୟୋତି ଶୋଇ ପଡ଼ିଲାଣି । ପାଖକୁ ଯାଇ ତା' ମୁଣ୍ଡରେ ହାତ ବୁଲାଇ ଆଣିଲେ । ନିରୀକ୍ଷଣ କରି ତା' ମୁହଁକୁ ଚାହିଁ ରହିଲେ, ସତେ ଯେମିତି କେଉଁ ଯୁଗରୁ ସେ ଜ୍ୟୋତିକୁ ଦେଖି ନାହାନ୍ତି । ସେ ମନେ ମନେ ଭାବୁଥିଲେ, କେଉଁ ଏକ ଦେବୀ ଅଭିଶାପ ପାଇ ମର୍ତ୍ତ୍ୟପୁରକୁ ଆସି ମୋ କୋଳରେ ଜନ୍ମ ନେଇଛି ।

- ତା' ଶାଶୂ ପିନ୍ଧେଇ ଦେଇଥିବା ଶାଢ଼ୀ ଓ ଅଳଙ୍କାର ଗୁଡ଼ିକ ଜ୍ୟୋତିକୁ ଖୁବ୍ ସୁନ୍ଦର ଦିଶୁଛି । ଜ୍ୟୋତି ପାଦକୁ ଅଳତା ଭାରିମାନେ । ପାଦ ଆଂଗୁଳିର ଝୁଣ୍ଟିଆଗୁଡ଼ିକ ଝଲମଲ ହୋଇ ଉଠୁଛି । ସନାତନ ଆଗରୁ କେବେ ଜ୍ୟୋତିର ପାଦକୁ ଏମିତି ନିରୀକ୍ଷଣ କରି ଭଲ ଭାବେ ଲକ୍ଷ୍ୟ କରି ନଥିଲେ । ପାଦ ତଳରେ ଗୋଟାଏ ଲମ୍ବା ରେଖା ଏ'ମୁଣ୍ଡରୁ ସେ ମୁଣ୍ଡ ଯାଏ, ଲମ୍ବି ଯାଇଛି । ତାକୁ ଦେଖି ତାଂକର ମନେ ପଡ଼ିଗଲା, ଥରେ ବାବା କହୁଥିଲେ; 'ମଣିଷର ପ୍ରତ୍ୟେକ ଅଂଗ, ତା'ର ଚ଼ରିତ୍ର ଓ ଗୁଣକୁ ପ୍ରକାଶ କରେ । ପାଣ୍ଡବମାନଙ୍କର ମାତା କୁନ୍ତୀ ଏବଂ ପତ୍ନୀ ଦ୍ରୌପଦୀ ଓ ମାତା ସୀତାଙ୍କର ପାଦ ତଳେ ଏଇମିତି ଲମ୍ବା ସିଧା ଗାର ଏ'ମୁଣ୍ଡରୁ ସେ ମୁଣ୍ଡ ଯାଏ ଲମ୍ବିଥିଲା । ତେଣୁ ସେମାନେ ପ୍ରାତଃ ସ୍ମରଣୀୟା ଜନନୀ ହୋଇ ପାରିଥିଲେ । ଏଭଳି ଚିହ୍ନଥିବା ନାରୀମାନେ ହେଉଛନ୍ତି-ଦେବ ଅଂଶୀ ।'

ବାବାଂକ କଥା ଅନୁସାରେ ସନାତନ ବୁଝିଗଲେ; ନିଶ୍ଚୟ ଜଣେ ଦେବୀ ଆସି ଏଠି ଜନ୍ମ ଗ୍ରହଣ କରିଛନ୍ତି ।

ଆପେ ଆପେ ତାଂକର ଦୁଇ ହାତ ମାଆଙ୍କ ଉଦ୍ଦେଶ୍ୟରେ ଯୋଡ଼ି ହେଇ ପଡ଼ିଲା । ଆଖିର ପତା ମୁଦି ହୋଇ ଆସୁଥିଲା । ଦୁଇଟି ବିନ୍ଦୁ ଲୁହ ଆଖି କୋଣରୁ ଗଡ଼ି ଆସିଲା । ତାଂକ କଣ୍ଠରୁ ସ୍ୱତଃ ବାହାରି ପଡ଼ିଲା -

***"ଯା ଦେବୀ ସର୍ବ ଭୂତେଷୁ କନ୍ୟା ରୂପେଣ ସଂସ୍ଥିତା,***
***ନମଃ ତସ୍ମୈ ନମଃ ତସ୍ମୈ ନମଃ ତସ୍ମୈ ନମୋ ନମଃ ।"***





ମଧୁପୁର ଗାଁ'ରୁ ଗାଡ଼ି ଛାଡ଼ିବା ପରେ ପରେ ପୁଅର ମାମୁ ଶ୍ରଦ୍ଧାକର କଥା ଆରମ୍ଭ କଲେ, ବୁଝିଲୁ ଅପା ! ଗୋଟିଏ ଗୁଳିରେ ଦୁଇଟା ଶିକାର ହେଇଗଲା ପରି, ଆଜି ଆମେ ଗୋଟାଏ ଶୁଭ କାମରେ ଆସି ବଡ଼ିଆ ପାଲାଟିଏ ବି ଦେଖି ପାରିଲେ । ତତେ କେମିତି ଲାଗିଲା - ଅପା ?

ଅପା କହିଲେ, 'ତୁ ତ ପାଲା ରଙ୍କୁଣାଟାଏ । ସେ କଥା କ'ଣ ମୋତେ ଜଣାନାହିଁ ! ସେମାନେ ନିମନ୍ତ୍ରଣ କରି ନଥିଲେ ବି ତୁ ନିଜ ଆଡୁ କହିଥା'ନ୍ତୁ - 'ଅପା ! ଘଣ୍ଟାଏ ଖଣ୍ଡେ ପାଲା ଦେଖି ଦେଇ ଯିବା' ।

ଅପାଙ୍କ କଥା ଶୁଣି ଏକାଥରେ ସମସ୍ତେ ହସି ପକାଇଲେ । ଶ୍ରଦ୍ଧାକର କହିଲେ, 'ସତେ ଯେମିତି ତୋ'ର ମୋଟେ ଇଚ୍ଛା ନଥିଲା ଆଉ ... ହଉ କହିଲୁ ଆଗ, ପାଲାଟି ଆଜି ତତେ କେମିତି ଲାଗିଲା' ?

- 'ବହୁତ ବଢ଼ିଆ । ଆରେ ଶ୍ରଦ୍ଧା ! ବିଷୟ ବସ୍ତୁଟି ବଡ଼ିଆ ହେଲେ, ସମସ୍ତଙ୍କ ମନକୁ ପାଇବ । ତା'ସାଂଗକୁ ଯଦି ଗାୟକ, ପାଳିଆ ଟିକେ ଭଲ ପଡ଼ିଗଲେ, ତେବେ ତ ପାଲା ଜମିବା କଥା, ଜମିଲା' ।

- ବୟସ୍କ ଲୋକଟି ହିସାବରେ ଶ୍ରଦ୍ଧାର ମଉସା ହେବେ । ସେ କଥା ମଝିରେ କହି ପକାଇଲେ, 'ଶୁଣ ବାପା ! ଇଏ ହେଲା ପୁରାଣ, ଶାସ୍ତ୍ରକଥା । ଆଜିକାଲି ଯୁଗର କଥା ହେଇଥିଲେ, ଲୋକ ନିନ୍ଦାରେ ଅମ୍ବିକା ହେଉ କି ଅମ୍ବାଳିକା ହେଉ, କେହି ବଞ୍ଚି ପାରି ନଥା'ନ୍ତେ । ସେମାନେ ପୁଅ ଜନ୍ମ କରିଥା'ନ୍ତେ କ'ଣ ? ଆରେ, ଇଏ ସତ୍ୟଯୁଗର କଥା ବୋଲି ଚଳିଗଲା । ଏବେ ଯଦି କିଏ ଏଇମିତିକା କାଣ୍ଡଟିଏ କରିଦିଏ, ତାକୁ କ'ଣ ଗାଁ' ଲୋକେ ରଖେଇ ଦେବେ'?

- ମଉସାଙ୍କ କଥାରେ ଉତ୍ତର ଦେଇ ଶ୍ରଦ୍ଧାକର କହିଲେ - 'ଶୁଣ ମଉସା ! ଏବେ ସେଇମିତି ଘଟଣା ନଘଟୁଛି ବୋଲି ତମେ କ'ଣ କୋରଦେଇ ଦେଇ କହି ପାରିବ'?

- ରାମାୟଣ କି ମହାଭାରତ, ଏ'ସବୁ ଲେଖା ହେଉଛି କାହିଁକି ? ଏହି ଦି'ଖଣ୍ଡ ମହାକାବ୍ୟ ଲେଖା ହେଇଛି - କଳିଯୁଗର ଲୋକମାନଙ୍କୁ ଦିଗ୍‌ଦର୍ଶନ ଦେବାପାଇଁ। ଅର୍ଥାତ୍, ଯେତେବେଳେ ଜୀବନରେ କୌଣସି ପ୍ରକାର ଅଡୁଆ ସମସ୍ୟା ଦେଖାଦେବ, ସେତେବେଳେ ଶାସ୍ତ୍ର ପୁରାଣ ଅନୁସାରେ ସେ ସମସ୍ୟାର ସମାଧାନ କରା ଯାଇ ପାରିବ। ସତ୍ୟରକ୍ଷା, ପରୋପକାର ଆଉ ଧର୍ମରକ୍ଷା ହଉଛି -ପୁରାଣ ଶାସ୍ତ୍ରର ମୂଳକଥା। ଏଥିପାଇଁ ଶାସ୍ତ୍ରରେ ବିଭିନ୍ନ ଉପାୟ ବତେଇ ଦିଆ ଯାଇଛି ।

ଅପା ମୁହଁ ଖୋଲି କହିଲେ, 'ଶ୍ରଦ୍ଧାକର ! ଦେଖ, ପୁରାଣ ଅନୁସାରେ କାମ କଲେ, ମଣିଷ ଆଜିକାଲି ଦିନଟିଏ ବି ଚଳି ପାରିବ ନାହିଁ । ରାମାୟଣରେ ରାମଚନ୍ଦ୍ର ମହାପ୍ରଭୁ ସୀତା ମାତାଙ୍କୁ ନେଇ ବଣରେ ଛାଡ଼ି ଦେଇ ଆସିଥିଲେ, ସାମାନ୍ୟ ଗୋଟାଏ ଧୋବଣୀ କଥା ଶୁଣି। ମାତା ସୀତାଦେବୀ ଏତେ କଷ୍ଟରେ ଥାଇ ମଧ୍ୟ ତାଂକ ସ୍ୱାମୀଙ୍କର ନିନ୍ଦା ଦିନେ ବି କରି ନାହାନ୍ତି । ସେ ଜାଣିଥିଲେ, ତାଂକର ସ୍ୱାମୀ ତାଂକ ପ୍ରତି ଘୋର ଅନ୍ୟାୟ କରିଛନ୍ତି। ତଥାପି ସେ ନୀରବ ରହି ତପସ୍ୱିନୀ ଜୀବନ କାଟିଲେ। ଆଜିକାଲିର କୋଉ ଝିଅଟା ଏମିତି ସହିବ ଯେ ? କାହିଁ ତାଂକ ଉପରେ ତ ପୁରାଣ ଶାସ୍ତ୍ରର କିଛି ପ୍ରଭାବ ପଡୁନାହିଁ' ।

- 'ଅପା ! ମୁଁ ତ ସେହି କଥା କହୁଛି। ଆମେ ପୁରାଣ ଶାସ୍ତ୍ରର ନିୟମକୁ ଅବଜ୍ଞା କରୁଥିବାରୁ ଏମିତି ସବୁ ବିଭ୍ରାଟ ହଉଛି।

- ମଉସା କହିଲେ, 'ଶୁଣରେ ବାପା! ମୁଁ ଆଗରୁ ଥରେ ଶୁଣିଥିଲି। ପଣ୍ଡୁ ରାଜାଙ୍କର ବି ଅବସ୍ଥା ସେଇୟା ହେଇଥିଲା। ରାଣୀ କୁନ୍ତୀ ଜଣେ ଶ୍ରେଷ୍ଠ ସତୀ ନାରୀ ଥିଲେ ସତ; କିନ୍ତୁ ପଣ୍ଡୁ ରାଜାଂକ ଔରସରୁ ତାଂକର ଗୋଟିଏ ହେଲେ ବି ପୁଅ ଜନ୍ମ ହୋଇ ନାହାନ୍ତି। ଏଣେ ଧର୍ମ ଦେବତାଂକଠାରୁ ଧର୍ମରାଜ ଯୁଧିଷ୍ଠିର, ପବନ ଦେବତାଙ୍କଠାରୁ ଭୀମ, ଇନ୍ଦ୍ର ଦେବତାଙ୍କଠାରୁ ଅର୍ଜୁନ ଜନ୍ମ ଗ୍ରହଣ କରିଥିଲେ। ଏ'ସବୁ ବଡ଼ ବଡ଼ିଆଙ୍କ କଥା ବୋଲି ଚଳିଗଲା ସିନା, ସାଧାରଣ ଲୋକଙ୍କ ପାଇଁ ଏ'ସବୁ ଚଳିବ ନାହିଁ। ଆଜିକାଲିର ଆଇନ୍ କାନୁନ, ରୀତି ନୀତି ସବୁ ଅଲଗା ' ।

ଅପା କହିଲେ - 'ମଉସା ! ଆପଣ ଯାହା କହିଲେ ସେ କଥା ସତ । କଥା ହଉଛି - ପୁରାଣ ଶାସ୍ତ୍ରର କଥାଗୁଡ଼ିକ ସାଧାରଣ ମଣିଷ ମନରେ ସାହସ ଓ ବିଶ୍ୱାସ ବଢ଼େଇ ଥାଏ । ନ୍ୟାୟ, ଧର୍ମ ଓ ସତ୍ୟରକ୍ଷା କରିବା ପାଇଁ ମଣିଷକୁ ଠିକ୍ ସମୟରେ ସଚେତନ କରେଇ ଦେଇଥାଏ । ଶ୍ରଦ୍ଧାକର ଯାହା କହୁଛି, ସେକଥା ତ ଠିକ୍, ଆଉ ତମେ ଯାହା କହୁଛ- ସେ କଥା ବି ଠିକ୍ ।

- ହଉ ମଉସା ! କହିଲ, ନାତୁଣୀ ବୋହୂଟି ତମକୁ କେମିତି ଲାଗିଲା' ?

ଖୋଲା ହସଟିଏ ହସି ମଉସା କହିଲେ, 'ନାତୁଣୀ ବୋହୂ କଥା ଆଉ ମୁଁ କ'ଣ କହିବି ? ତୁ ତ ନିଜେ ଲକ୍ଷ୍ମୀ ପ୍ରତିମାଟିଏ ବାଛି ନେଇଛୁ ଆଉ । ରୂପଟି ଯେମିତି, ଗୁଣରେ ବି ସେମିତି । ତମେ ଯେତେବେଳେ ସମୁଦୁଣୀ ପାଖରେ ଗପୁଥିଲ, ମୁଁ ପରା ଯାଇ ମୋ ନାତୁଣୀ ବୋହୂ ପାଖରେ ବସିଥିଲି । ବହୁତ କଥା ହେଲି । ତା'ପାଠ ପଢ଼ା କଥା, ଧର୍ମଶାସ୍ତ୍ର କଥା ଆଉ ମୋ ନାତି ସୂର୍ଯ୍ୟକାନ୍ତ କଥା ବି ।

- ହଁ ରେ, ଶ୍ରଦ୍ଧାକର ! ତୁ ଯୋଉ ଫଟୋ ଖଣ୍ଡକ ମୋତେ ଦେଇଥିଲୁ ନା'! ତାକୁ ମୁଁ ମୋ ନାତୁଣୀ ବୋହୂକୁ ଦେଇ ଦେଇକି ଆସିଛି । ରଖିଥାଉ ପିଲାଲୋକ । ତା' ବରକୁ ତ ସିଏ ଆଜିଯାଏ, ଦେଖି ପାରିନାହିଁ । ଫଟୋରେ ଟିକେ ଆଗତୁରା ଦେଖିଥାଉ'?

- ଶ୍ରଦ୍ଧାକର କହିଲେ, 'ମୁଁ ତ ଆଗରୁ ସୂର୍ଯ୍ୟକୁ କହିଥିଲି, ଯା' ତୁ ନିଜେ ତୋ' କନିଆଁଟିକୁ ଦେଖ । ସିଏ ବି ତତେ ଦେଖୁ ! ଦୁହେଁ କଥାବାର୍ତ୍ତା ହୁଅ । ପରସ୍ପରକୁ ଚିହ୍ନ । ଆଜିକାଲି ଆଉ ସିଏ ପୁରୁଣା ଯୁଗର ଚଳଣି କ'ଣ ଅଛି ? ଯା' - କିନ୍ତୁ ସୂର୍ଯ୍ୟ କହିଲା, 'ମାମୁ ଆଉ ବୋଉ ତ ତାକୁ ତ ଦେଖି ସାରିଛନ୍ତି, ସେମାନେ ଯେଉଁଠି ରାଜି, ମୋର ସେଇଠି କିଛି କହିବାର ନାହିଁ' ।

- ମଉସା କହିଲେ, 'ଯୁଗ ଯୁଗ ଧରି ବର ପାଇଁ କନ୍ୟା ଯୋଖା ହେଇ ରହିଛନ୍ତି । ଧୃତରାଷ୍ଟ୍ରଙ୍କ ପାଇଁ ଗାନ୍ଧାରୀ, ରାମଚନ୍ଦ୍ରଙ୍କ ପାଇଁ ସୀତା, ଏଣେ ରାବଣଙ୍କ ପାଇଁ ମନ୍ଦୋଦରୀ । ଏ'ସବୁ ଆଗରୁ ଥୁଆ । କନିଆଁକୁ ଦେଖିଲେ କେତେ, ନ ଦେଖିଲେ କେତେ । ମୁଁ ତ କାହିଁ ତୋ' ମାଉସୀଙ୍କୁ ଆଗରୁ ଦେଖି ନଥିଲି, କ'ଣ ଅସୁବିଧା ହେଇଛି? କହିଲୁ । ଆଉ ଦେଖି ଚାହିଁ, କଥା ହେଇ, ରାଜିରୁଜା ହେଇ ଯେଉଁମାନେ ବାହା ହଉଛନ୍ତି, ସେମାନେ କ'ଣ ଭାରି ଭଲରେ ଅଛନ୍ତି ?

ଦେଖୁନା ସବୁଦିନର ଖବର କାଗଜ । ବଡ଼ଘର ଲୋକମାନଙ୍କର ଝିଅ-ବୋହୂମାନେ କେମିତି ଛାଡ଼ପତ୍ର ଦେଇ ବାରଆଡ଼େ ବୁଲୁଛନ୍ତି । ଛି - ଛି - ଛି !

ଅପା କହିଲେ -' ମଉସା ! ବୋହୂ ଯଦି ଘରର କୁଳବୋହୂ ହେଇ ରହନ୍ତେ, ତେବେ ଏ'ସବୁ ବିଭ୍ରାଟ ହୁଅନ୍ତା ନାହିଁ । କଥାରେ ଅଛି - ଦୁଇଟି ଜିନିଷକୁ ସର୍ବଦା ଘୋଡ଼େଇ ରଖିବ । ଗୋଟିଏ ହେଲା - ପ୍ରସ୍ତୁତ ଖାଦ୍ୟ, ଅନ୍ୟଟି ହେଲା - ଯୌବନ । ଏ'ଦୁଇଟି ଜିନିଷ ଅଘୋଡ଼ା ରହିଲେ, ଦୂଷିତ ହେଇଯାଏ । ଆଗକାଳର ଲୋକେ ଏ'କଥାକୁ ଜାଣିଥିଲେ, ତେଣୁ ନାରୀମାନଂକୁ ଯେମିତି ଘରକୋଣରେ ରଖୁଥିଲେ, ସେମିତି ମର୍ଯ୍ୟାଦା ତାଂକୁ ମିଳୁଥିଲା । ଆଜିକାଲି ଯୁଗର ଗତି ଯେମିତି ହେଲାଣି, ଝିଅ-ବୋହୂ ତ ନିଜେ ନିଜର ମର୍ଯ୍ୟାଦାକୁ ପଦାରେ ପକେଇ ଦଉଛନ୍ତି । କହିବ କାହାକୁ ? ଦୋଷ ଦେବ କାହାକୁ ?? ସବୁ ଦୋଷ ତ ଆମର' ।

ମଉସା ପଚାରିଲେ, କିରେ ଶ୍ରଦ୍ଧା ! 'ଆମ ଗାଁ' ଆଉ କେତେ ଦୂର ରହିଲା? ଇଚ୍ଛା ତ ଥିଲା- ପୂରା ପାଲାଟିକୁ ଦେଖି ଫେରିଥା'ନ୍ତି । ତମେ ଦି'ଜଣ ଆଗତୁରା ଉଠି ଚାଲି ଆସିଲ । ବାଧ୍ୟ ହେଇ ମୋତେ ଉଠିବାକୁ ପଡ଼ିଲା, - ତମରି ପାଇଁ ।

- ବୁଝିଲୁ ଝିଅ ! ତମର ସମୁଦିଟି ମଧ୍ୟ ମଣିଷ ପରି ମଣିଷଟିଏ । ବଡ଼ ଧର୍ମ ପରାୟଣ ଲୋକ । କଥା କଥାରେ ଶାସ୍ତ୍ର ପୁରାଣ ଆଉ ସତ୍ୟ, ନ୍ୟାୟର କଥା । ବିଚରା ତା' ଝିଅଟିକୁ ତ ଏତେ ଭଲ ପାଏ, ତାକୁ ବାହାଦେଇ ସାରିଲେ,କେମିତି ଚଳିବ କେଜାଣି ? ମୁଁ ତାଂକୁ କହୁଥିଲି, ତମରି ଗୁଣ ନେଇ ତମ ଝିଅଟି ଜନ୍ମ ହେଇଛି । ତମରିଠାରୁ ସବୁ ସତ୍ୟ, ଧର୍ମ, ନ୍ୟାୟ୍ କଥା ଝିଅ ଶିଖି ନେଇଛି । ସତ କହିବାକୁ ଗଲେ, ତମର ଜ୍ୟୋତି 'ଯାଇ ଆମ ବିକ୍ରମପୁରରେ ଆଲୋକ ବିତରଣ କରିବ' ।

ଜ୍ୟୋତିର ପ୍ରଶଂସା ଶୁଣି ଶ୍ରଦ୍ଧାକର କହିଲେ - 'ମଉସା ! ଆଜିକାଲି ଯୁଗରେ ଭଲ ଝିଅଟି ପାଇବା କଷ୍ଟକର ବ୍ୟାପାର ହେଇ ଗଲାଣି । ଚାରିଆଡ଼ ତ ପ୍ରଦୂଷିତ । ବାୟୁ ପ୍ରଦୂଷିତ, ଜଳ ପ୍ରଦୂଷିତ, ଖାଦ୍ୟ ପ୍ରଦୂଷିତ, ଲୋକଙ୍କର କଥା ପ୍ରଦୂଷିତ ଆଉ ନେତାମାନଙ୍କର ଭାଷଣ ବି ପ୍ରଦୂଷିତ । ମୋଟ ଉପରେ ପ୍ରଦ୍ୟୁଷିତ ପରିବେଶରେ କେମିତି ମଣିଷ ଭଲ ହୋଇ ପାରିବ କୁହତ ?'

- ଆରେ ! ଭଲ ଝିଅ କଥା କ'ଣ କହୁଛୁ ! ଭଲ ପୁଅଟିଏ ପାଇବା ଏବେ ବେଶି କଷ୍ଟକର ହେଲାଣି । ଅପାଠୁଆଙ୍କଠାରୁ ପାଠୁଆ ପିଲା ତ ଆହୁରି ବେଶି ଖରାପ

ହେଇ ଗଲେଣି । ସାଂଗସାଥୀଙ୍କ ସହିତ ମିଶି କୌତୂହଳ ବଶତଃ, କେବେ କେମିତି ନିଶା ଖାଉ ଖାଉ ପୂରା ନିଶାଖୋର ହେଇ ଯାଉଛନ୍ତି । ଅଧାରୁ ଅଧିକ ଶିକ୍ଷିତ ପିଲା, ଏବେ ମଦୁଆ ହେଇ ଗଲେଣି । ମଦଖାଇ ମାଡ଼ଗୋଳ କରି ଦୁନିଆ ପ୍ରକାର ଅଭିଯୋଗରେ ତାଂକ ନାଆଁ ଥାନାରେ ରହି ଯାଉଛି । ଭବିଷ୍ୟତରେ ତାଂକର କେତେବେଳେ କ'ଣ ଅସୁବିଧା ହବ, କିଏ କହି ପାରିବ ?' ମଉସା ଏକା ନିଶ୍ୱାସକେ କହି ପକାଇଲେ ।

- ଶ୍ରଦ୍ଧାକର କହିଲେ, 'ସେ କଥା ନୁହେଁ ଆଉ କ'ଣ ? ଆମ ସୂର୍ଯ୍ୟ ପରା ସେହି କଥା କହୁଥିଲା । ଯେଉଁମାନେ ପାଠ ପଢ଼ିବା ପିଲା, ସେମାନେ ଠିକ୍ ତାଂକର କାମ କରି ଚାଲିଛନ୍ତି । କେତେଟା ବଦମାସ ପିଲା ହିଁ ତାଂକର ବଦମାସୀ କାମ ଆରମ୍ଭ କରି ପୂରା ଅନୁଷ୍ଠାନକୁ ବଦନାମ କରି ଦିଅନ୍ତି । ତାଂକରି ପାଇଁ ଅନ୍ୟ ପିଲାମାନେ ବି ଖରାପ ହେଇ ଯାଆନ୍ତି ।

ହେଇ ମଉସା ! ଆମ ଗାଁ' ପଢ଼ିଆ ହେଇ ଗଲାଣି । ଯାହାହେଉ, ସୂର୍ଯ୍ୟର ନିର୍ବନ୍ଧ କାମରେ ଯାଇ ସେଇଠି ପାଲା ଦେଖାହେଲା । ପାଲା ଦେଖାପରେ ଆଲୋଚନା ସଭାଟି ପୁଣି ଗାଡ଼ିରେ ହେଲା ।

- ଅପା ଶୋଇ ପଡୁଲୁଣି ନା' କ'ଣ ମ' ?

ଅପା କହିଲେ -'ନାଇଁ ମ । ତୁ ତ ବାଟଯାକ ବକର ବକର ହଉଛୁ । ନିଦ ହବ କେମିତି' ?

ଏତିକିବେଳେ ଗାଡ଼ି ବିକ୍ରମପୁର ଗାଁ'ରେ ପହଞ୍ଚି ଗଲା । ସମସ୍ତେ ଓହ୍ଲେଇ ପଡ଼ି ଘରକୁ ଚାଲିଲେ ।





ଜ୍ୟୋତିର ନିଦ ଭାଂଗିଗଲା । କାଲି ରାତି ଅନିଦ୍ରା ଥିବାରୁ ସେ କେତେବେଳେ ବସୁବସୁ ଶୋଇ ପଡ଼ିଥିଲା, ଜାଣିନାହିଁ । ଆଗରୁ ଏତେ ସମୟ ପୁଣି ଦିନରେ, ସେ କେବେ ଶୋଇ ନଥିଲା । ଚାରିଆଡ଼କୁ ଚାହିଁ ଦେଖିଲା, ମାମୁ ବେଞ୍ଚ୍ ଉପରେ ବସି ବସି ଶୋଇ ପଡ଼ିଛନ୍ତି । ସେ ଘରକୁ ଯାଇ ଦେଖେ ତ ମାଇଁ ତାଂକ ପିଲାଂକ ପାଖରେ ଶୋଇଛନ୍ତ । କିଂତୁ ବୋଉ ତା'ର ଏପଟ ସେପଟ ହେଉଛି । ଦାଣ୍ଡଘରେ ବାପା ଢୁଳେଇ ପଡ଼ିଛନ୍ତି ।

ସେ ମୁହଁ ହାତ ଧୋଇ ପକେଇ ନିଜ ପଢ଼ାଘରକୁ ଗଲା । ଗତକାଲି ଦିନଟା ଯାକ ସମସ୍ତେ ବ୍ୟସ୍ତ ଥିଲେ । ତାକୁ ଅବଶ୍ୟ ବିଶେଷ କିଛି କାମ କରିବାକୁ ପଡ଼ି ନଥିଲା, ତଥାପି ମାନସିକ ଚାପରେ ସେ ଯେମିତି ଏକ ପ୍ରକାର ଥକି ପଡ଼ିଥିଲା । ପୁଣି ରାତି ଅନିଦ୍ରା ଯୋଗୁ ସେ ଆହୁରି ଥକ ପଡ଼ିଛି । ତେଣୁ ନିଦଟା ଛାଡ଼ିଥିଲେ ବି ଛାଡ଼ି ନଥିଲା ଭଳି ଲାଗୁଥିଲା ।

ଟେବୁଲ ଉପରେ ସେହି ବଡ଼ ଲଫାପାଟା ଥୁଆ ହେଇଛି, ଜ୍ୟୋତିର ଦୃଷ୍ଟିରେ ପଡ଼ିଗଲା । ଗତକାଲି ସୂର୍ଯ୍ୟକାନ୍ତଙ୍କର ମଉଜିଆ ଅଜା ଜଣକ ସେ ଲଫାପାଟି ଦେଇ କହିଥିଲେ, 'ଦେଖିଲୁ ମା, ଯା' ଭିତରେ କିଏ ଅଛି, ଭଲକରି ତାକୁ ଟିକେ ଦେଖିଲୁ' ।

ଫଟୋ ଷ୍ଟୁଡ଼ିଓର ଲଫାପା ଦେଖି ଜ୍ୟୋତି ଅନୁମାନ କରିନେଲା, ଏଥିରେ ନିଷ୍ଚୟ ତା'ର ଭାବୀପତି ସୂର୍ଯ୍ୟକାନ୍ତଙ୍କର ଫଟୋ ହିଁ ଥିବ ।

ଲଫାପାଟିକୁ ଛୁଇଁ ଦେବା ମାତ୍ରେ ଜ୍ୟୋତି ଦେହରେ କେମିତି ଏକ ଅଜଣା ଶିହରଣ ସୃଷ୍ଟି ହେଇଗଲା । ତାକୁ ଲାଗିଲା, କେଉଁ ଦିନରୁ ଅପେକ୍ଷା କରି ରହିଥିବା - ମନର ମଣିଷ ତାକୁ ହଠାତ୍ ଯେମିତି ଯାବୁଡ଼ି ଧରି ପକାଉଛି । ଜ୍ୟୋତିର ମୁହଁ ଲାଜରେ ଝାଁଉଳି ପଡ଼ିଲା । ହାତର ଆଂଗୁଳିଗୁଡ଼ାକ ସତେ ଯେମିତି ହୁଗୁଳା ହେଇ ଆସୁଥିଲା । ନିଶ୍ୱାସର ଗତି ବଢ଼ି ବଢ଼ି ଯାଉଥିଲା । ମୁହଁ ଟେକି ସେ ଅଜାଙ୍କ ମୁହଁକୁ ଚାହିଁ ପାରିଲା ନାହିଁ; କିମ୍ବା ଲଫାପାଟିକୁ ଖୋଲି ତା' ଭିତରେ ଥିବା ଫଟୋଟିକୁ କାଢ଼ି ପାରିଲା ନାହିଁ ।

-ଅଜା ଠିକ୍ ବୁଝି ପାରିଲେ, ଜ୍ୟୋତିର ଆବେଗକୁ । ତା' ହୃତସ୍ପନ୍ଦନ ଗତିକୁ ସେ ସହଜରେ ମାପିଦେଲେ ।

- ଯେତିକି ସମୟ୍ ଜ୍ୟୋତି ନୀରବ ରହି କ'ଣ ଭାବି ହେଉଥିଲା, ସେତିକି ସମୟ୍ ତକ ଅଜା ତା' ମୁହଁକୁ ଚ଼ାହିଁ ବେଶ୍ ଉପଭୋଗ କରୁଥିଲେ ।

- ' କ'ଣ ନାତୁଣୀ, ଫଟୋ ନଦେଖୁଣୁ ସୂର୍ଯ୍ୟ ପ୍ରେମରେ ପଡ଼ିଗଲୁ ନା' କ'ଣ' ?

ମଉଜିଆ ଅଜାଙ୍କ କଥାରେ ଜ୍ୟୋତିର ସମ୍ବିତ ଫେରି ଆସିଲା । ସେ ମନଟାଣ କରି ଲଫାପା ଭିତରୁ ଫଟୋଟିକୁ କାଢ଼ି ପକାଇଲା । ଦେଖିବାକୁ ମନ ନଥିବାର ଅଭିନୟ୍ କରି ସେ ଫଟୋ ଉପରେ କେବଳ ଆଖି ବୁଲେଇ ଦେଇ ଲଫାପା ଭିତରେ ପୁଣି ଭର୍ତ୍ତି କରି ଦେବାକୁ ଉଦ୍ୟତ ହେବା ବେଳକୁ ଅଜା ଅଟକାଇ ଦେଇ କହିଲେ, 'ଆହା - ହା ! ରହ, ରହ । ଏମିତି ତରବର ହେଇ ବନ୍ଦ କରି ଦଉଛୁ କାହିଁକି ? ମୁଁ ଜାଣେ, ମୋ ଆଗରେ ସୂର୍ଯ୍ୟର ଫଟୋ ଦେଖିବାକୁ ତତେ ଲାଜ ମାଡୁଛି । କିନ୍ତୁ ଭଲକରି ଦେଖିବାକୁ ତୋ'ର ଭାରି ଇଚ୍ଛା ଅଛି ।

- ଠିକ୍ ଅଛି, ମୁଁ ଆଖିବନ୍ଦ କରୁଛି, ତୁ ମନଭରି ଭଲ କରି ଫଟୋଟିକୁ ଦେଖ । ତା'ପରେ ମୋ ଚ଼େହେରା ସହିତ ତୋ' ବର ଫଟୋକୁ ତୁଳନା କରିକି ମୋତେ କହ, ସିଏ ସୁନ୍ଦର କି ମୁଁ ସୁନ୍ଦର' ?

ଅଜା ସତରେ ଜଣେ ରସିକିଆ ଆଉ ମଉଜିଆ ମଣିଷଟିଏ । ଅଳ୍ପ ସମୟ୍ ଭିତରେ ପରକୁ ଆପଣା କରିବାର କୌଶଳ ତାଂକୁ ଜଣା । ପର ଆପଣା, ଚ଼ିହ୍ନା-ଅଚ଼ିହ୍ନା ତାଂକର କିଛି ନାହିଁ । କଥା କହୁ କହୁ - ସତକୁ ସତ ସିଏ ଆଖି ବୁଜି ବସି ରହିଲେ ।

ଜ୍ୟୋତି ଲାଜେଇ ଲାଜେଇ ଟିକେ ଫଟୋକୁ ତ ଟିକେ ଅଜାଂକ ମୁହଁକୁ ଚ଼ାହୁଁଥିଲା । କାଳେ ଅଜା ଛୁପି ଛୁପି ତାକୁ ଦେଖୁଛନ୍ତି ନା'ନାହିଁ ?

ଜ୍ୟୋତି କହିଲା - 'ହଉ ଅଜା ଏବେ ଆଖି ଖୋଲ । ଫଟୋ ଦେଖି ସାରିଲିଣି । ଆଉ ଫଟୋ ତୁଳନାରେ ତମେ ହିଁ ସୁନ୍ଦର ଦିଶୁଛ'।

ଜ୍ୟୋତିର କଥା ଶୁଣି ଅଜାଙ୍କର ଆଖି ଖୋଲି ହେଇଗଲା । ଅଜା ମନଖୋଲି ସୂର୍ଯ୍ୟର ପ୍ରଶଂସା କରି ଚ଼ାଲିଲେ, 'ବୁଝିଲୁ ଜ୍ୟୋତି ! ତୋ' ନାଆଁ ଜ୍ୟୋତି ଆଉ ମୋ ନାତିର ନାଆଁ ସୂର୍ଯ୍ୟ । ବଢ଼ିଆ ମେଳ ଖାଇଛି । ସୂର୍ଯ୍ୟର ଜ୍ୟୋତିରେ ଆମ ଗାଁ' ଆଲୋଚ଼ିତ ହେଇଯିବ । ସିଏତ ଆମ ଅଂଚ଼ଳର ସବୁଠୁ ଭଲ ପିଲା । ବିଚ଼ରା ପିଲାଟିବେଳୁ ବାପାଙ୍କୁ ହରେଇଛି । କେବଳ ତା' ମାଆର କଠିଣ ପରିଶ୍ରମ, ଧର୍ମବଳ ଆଉ ଅଗାଧ ଭଗବତ୍ ବିଶ୍ୱାସ ହିଁ ସୂର୍ଯ୍ୟକୁ ମଣିଷ ଭଳି ମଣିଷଟିଏ କରି ଗଢ଼ି ତୋଳିଛି । ତୁ' ଆମ ଗାଁ'କୁ

ଗଲେ, ସମସ୍ତଙ୍କୁ ନିଜର କରି ରଖିବୁ । ଗାଁ'ରେ ସମସ୍ତେ ସୂର୍ଯ୍ୟଙ୍କୁ ଭଲ ପାଆନ୍ତି । ତୋ' ପାଇଁ ଆମେ ସବୁ ଅପେକ୍ଷା କରିକି ରହିଛୁ ।

ଯାହାହେଉ, ଏ'ବୁଢ଼ା ଅଜାକୁ ନାଲି ଚ଼ା' ଟିକେ ଟିକେ କରିକି ଦଉଥିବୁ । ମୋ ମଜା କଥା ଟିକେ ଟିକେ ଶୁଣୁଥିବୁ । କେବେ ବି ଖରାପ ଭାବିବୁ ନାହିଁ । ଆମଘରଟି ସୂର୍ଯ୍ୟଘରଠୁ ଅଳ୍ପ ଦୂର । ମୁଁ ମଝିରେ ମଝିରେ ସୂର୍ଯ୍ୟ ଘରକୁ ଯାଏ । ତା' ବୋଉ ମୋର ଧରମ ଝିଅ ହେଇଛି । ଆମର ଗୁଆଚ଼ଳେ । ବୁଝିଲୁ'?

ପାଲା ଆରମ୍ଭ ହେବାଯାଏ, ଅଜା ଜ୍ୟୋତି ପାଖରେ ବସି ଅନେକ ମଜା-ମଉଜ କଥା ହେଇଥିଲେ । ତା'ଠାରୁ ମଧ୍ୟ ଅନେକ କଥା ଶୁଣିଥିଲେ । ତେଣୁ ଫଟୋଟିକୁ ଭଲକରି ଦେଖିବାକୁ ତା'ର ମନ ଉଛନ୍ନ ହେଉଥିଲେ ବି ସେ ଦେଖିପାରି ନଥିଲା ।

- ବର୍ତ୍ତମାନ ଘରେ ବନ୍ଧୁ ବାନ୍ଧବ ଭର୍ତ୍ତି ହୋଇଥିଲେ ବି ଯିଏ ଯୁଆଡ଼େ ନିଜ ବ୍ୟବସ୍ଥାରେ ଅଛନ୍ତି । କହିବାକୁ ଗଲେ, ଘରଟା ଏକଦମ୍ ଶୂନଶାନ, ନିର୍ଜନ ଲାଗୁଛି । ଏତିକି ବେଳେ ଜ୍ୟୋତି ଲଫାପାଟିକୁ ଉଠେଇ ନେଇ ଅତ୍ୟନ୍ତ ସନ୍ତର୍ପଣରେ ଫଟୋକୁ ବାହାର କରି ଯତ୍ନର ସହିତ ନିରୀକ୍ଷଣ କଲା ।

- ସୌମ୍ୟକାନ୍ତ ଯୁବକ ସୂର୍ଯ୍ୟକାନ୍ତ ବେଶ୍ ଏକ ରୋମାଣ୍ଟିକ୍ ପୋଜ୍ ନେଇ ଠିଆ ହେଇଛନ୍ତି । ହାଲୁକା ନୀଳ ସାର୍ଟ ଉପରେ କଫି ରଙ୍ଗର ଟାଏ । ନାକ ତଳେ କଳା ମଚ୍ ମଚ୍ ସରୁଆ ନିଶ । କୁଞ୍ଚୁକୁଞ୍ଚିଆ ଚୂଟି ବାଁ'ପାଖକୁ ଛୋଟ ସୁତାନି କଟା ହେଇଛି । ଆଖି ଦୁଇଟା ଡ଼ିମା ଡ଼ିମା ଦିଶୁଛି । ଲାଗୁଛି, ସତେ ଯେମିତି ସେ ଫଟୋ ଦେଖିବା ଲୋକକୁ ଅନେଇ ମୁରୁକି ମୁରୁକି ହସୁଛନ୍ତି ।

- କାଳେ କିଏ ଚ଼ାଲି ଆସି ତାକୁ ଦେଖି ଦେବ । ତେଣୁ ତା' ଆଖି ଦୁଇଟା କନ କନ ହେଉଥାଏ । ଏଣେ ଫଟୋଟିକୁ ଅନେକ ସମୟ ଧରି ଏକୁଟିଆ ଦେଖିବାକୁ ତା'ର ଇଚ୍ଛା ହେଉଥାଏ । ଜ୍ୟୋତି ମନରେ ଗୋଟାଏ ଖିଆଲ ଆସିଗଲା । ତାଂକ ଫଟୋ ପାଖରେ ମୋ ଫଟୋଟି କେମିତି ମାନୁଛି; ଦେଖିଲେ ହୁଅନ୍ତା । ତା'ର ମନେ ପଡ଼ିଗଲା, ଏଇ ଅଳ୍ପଦିନ ତଳେ ଯୋରନ୍ଦା ବଜାର ଷ୍ଟୁଡ଼ିଓରେ ତା'ର ଗୋଟାଏ ଫଟୋ ଉଠା ଯାଇଥିଲା । ସାଂଗମାନେ ସମସ୍ତେ କହୁଥିଲେ, 'ସେଇ ଫଟୋଟି ତା'ର ସବୁଠୁ ଭଲ ହେଇଛି । ତା'ର ମନେ ପଡ଼ିଗଲା, ଫଟୋର କପି ଖଣ୍ଡିଏ ତା' ପଢ଼ା ଟେବୁଲର ଡ୍ରରେ ଅଛି । ଜ୍ୟୋତି ଫଟୋ ଦେଖୁ ଦେଖୁ ଯାଇ ଡ୍ର ପାଖରେ ପହଞ୍ଚି ତା' ନିଜ ଫଟୋଟିକୁ କାଢ଼ିଲା । ଏଣିକି ତେଣିକି ଚ଼ାହିଁ ସୂର୍ଯ୍ୟ ଫଟୋ ସାଙ୍ଗରେ ତା'ଫଟୋଟିକୁ ଯୋଡ଼ି ଭଲ କରି ନିରୀକ୍ଷଣ କଲା ।

- ଆହା ! ଆନନ୍ଦରେ ମନ ଉଚ୍ଛୁଳି ପଡ଼ିଲା । ତା' ମନ ପକ୍ଷୀ ଉଡ଼ିବା ପାଇଁ

ଫଡ୍ ଫଡ୍ ହେଲା । କେଉଁ ଏକ ଅଜଣା ରାଇଜର ରାଜ କୁମାର ଆସି ତା'ଆଖି ଆଗରେ ଠିଆ ହେଇ ପଡ଼ିଲା ।

- ଜ୍ୟୋତି ମନକୁ ମନ ଭାବିଲା, 'ଏମିତିକା ଅନୁଭୂତି ମୋ ଜୀବନର ପ୍ରଥମ। ଆଗରୁ ତ ମୁଁ କେତେ ଲୋକଙ୍କର ଫଟୋ ଦେଖିଛି। କେତେ ଯୁବକଙ୍କ ସଂସ୍ପର୍ଶରେ ଆସିଛି। କିନ୍ତୁ କାହିଁ କେବେ ତ ଆଗରୁ ଏମିତି ମୋ' ମନଟା ଚଞ୍ଚଳ ହେଉ ନଥିଲା । ସୂର୍ଯ୍ୟକାନ୍ତ ନିଶ୍ଚୟ କିଛି ଯାଦୁ ଜାଣନ୍ତି।

- ଜଣେ ଲେଖକ ତାଂକ ଉପନ୍ୟାସରେ ଲେଖିଥିଲେ, ଏଭଳି ପରିସ୍ଥିତି ହେଲେ ଜାଣିବ, ତାକୁ ପ୍ରେମ ଜର ମାଡ଼ି ବସିଛି। ପ୍ରକୃତରେ ଏହାକୁ କହନ୍ତି, ପ୍ରେମ। ପ୍ରେମ ଗୋଟାଏ ଏମିତି ଜିନିଷ, ସେ ଭୁଲକୁ ଭଲ କରି ଦେଖାଇ ଦିଏ। ଅସୁନ୍ଦରକୁ ବି ସୁନ୍ଦର କରିଦିଏ। କର୍କଶ କଣ୍ଠଟା ତାକୁ ସୁମଧୁର ଶୁଣାଯାଏ। ଥରେ ପ୍ରେମ ନିଶା ଲାଗିଗଲେ, ପ୍ରେମିକାକୁ ପ୍ରେମିକର ସବୁ କଥା ଆଉ ପ୍ରତ୍ୟେକ କାମ ଭଲ ଲାଗେ। ତା'ର ନିନ୍ଦା ବିଷ ପରି ଲାଗେ। ତା' ଦେହର ଗଂଧ, ବାସ୍ନା ହେଇଯାଏ। ତା' ସ୍ପର୍ଶ ସ୍ୱର୍ଗସୁଖ ଆଣି ଦିଏ। ତା' ପୋଷାକ, ଚାଲି-ଚଳନ, କଥା-ବାର୍ତ୍ତା, ହସ-କାନ୍ଦ ସବୁ କିଛି କେବଳ ଭଲମୟ ହୋଇଯାଏ ' ।

- ଜ୍ୟୋତି ଭାବିଲା,'ମୋତେ ଏମିତି ପ୍ରେମ କରିବା ଶିଖେଇଲା କିଏ ? କେବଳ ସୂର୍ଯ୍ୟଙ୍କର ଅଜା ହିଁ ତାଂକର କିଛି ପ୍ରଶଂସା କରି ଫଟୋଟିଏ ଦେଇ ଯାଇଛନ୍ତି। ହେଇପାରେ, ପୂର୍ବଜନ୍ମରୁ ମୁଁ ସୂର୍ଯ୍ୟଙ୍କୁ ଭଲ ପାଇ ଆସୁଛି । ସେଇଥି ପାଇଁ ମୁଁ ଆଉ କାହାରିକୁ ପ୍ରେମ କରିବା କଥା ହିଁ ଚିନ୍ତା କରିପାରି ନଥିଲି । ସୂର୍ଯ୍ୟ ହିଁ ମୋର ଇହକାଳ, ପରକାଳର ଦେବତା, ସ୍ୱାମୀ ଆଉ ମୁକ୍ତିଦାତା । ତାଂକୁ ପ୍ରେମ କରିବା ମୋର କର୍ତ୍ତବ୍ୟ । ଯାହା ହେଇଛି, ଠିକ୍ ହେଇଛି'।

ଦୁଇ ହାତରେ ଦୁଇଟି ଫଟୋକୁ ଯୋଡ଼ି ଧରିଛି ଜ୍ୟୋତି । ଘର ଭିତରକୁ ତା'ର ଅନ୍ତରଂଗ ସାଙ୍ଗ ଦୁଇଜଣ ପଶି ଆସିଲେଣି, ତାକୁ ଜଣାନାହିଁ। ଫଟୋକୁ ଲୁଚେଇ ରଖିବାକୁ ସେ ଆଉ ସମୟ ପାଇଲା ନାହିଁ । ତାଂକ ଆଗରେ ଜ୍ୟୋତିର ପ୍ରେମ ଧରା ପଡ଼ିଗଲା । ବେଶ୍ ହସଖୁସିରେ ସଂଧ୍ୟାବେଳଟି କଟିଗଲା। ଜଣଜଣ କରି ସମସ୍ତେ ସୂର୍ଯ୍ୟକାନ୍ତଙ୍କର ଫଟୋ ଦେଖି ଖୁସି ହେଲେ। କିଏ କହିଲା, ରାଧା-କୃଷ୍ଣ, ରାମ-ସୀତା ଆଉ ଲକ୍ଷ୍ମୀ-ନାରାୟଣ ଯୋଡ଼ି ପରି ସୂର୍ଯ୍ୟ ଆଉ ଜ୍ୟୋତିଙ୍କର ଯୋଡ଼ି ମିଶିବ'।





ଆଗାମୀ କାଲି ଜ୍ୟୋତିର ବାହାଘର । ନିରାକାର ବାବାଂକ ଦ୍ୱାରା ଆଗରୁ ଦିନ-ବାର-ସମୟ ଠିକ୍ କରା ଯାଇଛି। ବ୍ରହ୍ମ ମୁହୂର୍ତ୍ତରେ ହିଁ ବରକନ୍ୟାଙ୍କର ଶପଥ ଗ୍ରହଣ କରାଯିବ । ତେଣୁ ଠିକ୍ ସୂର୍ଯ୍ୟୋଦୟ ପୂର୍ବରୁ ସବୁ କାମ ସାରିବାକୁ ପଡ଼ିବ। ସେହି ଅନୁସାରେ ବିକ୍ରମପୁରରୁ ବର ଆସି ରାତି ଚ଼ାରିଟା ସୁଦ୍ଧା ଯୋରନ୍ଦାରେ ପହଞ୍ଚିବାର କାର୍ଯ୍ୟକ୍ରମ ରହିଛି। ବରଯାତ୍ରୀମାନେ ନାଟିମା ବଜାରରେ ଘଣ୍ଟାଏ ନାଚ଼ିବେ। ସେଇଠୁ ଧୂନି ମନ୍ଦିର ପର୍ଯ୍ୟନ୍ତ ଅଲେଖ ଧର୍ମାବଲମ୍ବୀ ବାବାମାନେ ବରକୁ ନିମନ୍ତ୍ରଣ କରି ଆଣିବେ। ନିରାକାର ବାବା ଓ ମଧୁବାବା ବାହାଘର ପାଇଁ ଯାହା ଦରକାର ସବୁ ଯୋଗାଡ଼ କରି ସାରିଛନ୍ତି।

ବରଘର ସାଂଗରେ କଥା ହେଇଛି, ସେମାନେ ଠିକ୍ ସମୟରେ ବାହାରିବେ। କୌଣସି ବରଯାତ୍ରୀ ଯେମିତି ମଦ କି ନିଶା ନଖାଆନ୍ତି । କାରଣ ଏହି ବାହାଘର ସାଧାରଣ ବାହାଘର ନୁହେଁ । ଆଧ୍ୟାତ୍ମିକ ପରିବେଶରେ ପୁଣି ମହିମାଗାଦିର ମୁଖ୍ୟ ପୀଠରେ ଏହି' ବାହାଘର ହେବ। ନିଜେ ନିରାକାର ବାବା ବାହାଘରର ପୁରୋଧା ରହିବେ। ଅନ୍ୟ ସିଦ୍ଧ ବାବାମାନେ ଏହି ଉତ୍ସବରେ ଉପସ୍ଥିତ ରହି ବରକନ୍ୟାଙ୍କ ପାଇଁ ସ୍ୱତନ୍ତ୍ର ଭାବେ ଗୁରୁ ମହିମା ଅଲେଖଙ୍କୁ ପ୍ରାର୍ଥନା କରିବେ। ସାଧାରଣ ଲୋକେ ବାବାମାନଙ୍କ ସହିତ ମିଶି ଅନ୍ନ ଭିକ୍ଷା କରିବାର ସୁଯୋଗ ପାଇବେ। ତେଣୁ କେବଳ ଭଦ୍ରଲୋକ, ଗାଁଆର ମାନ୍ୟଗଣ୍ୟ ଲୋକ ଆଉ ଶିକ୍ଷିତ, ଆଧ୍ୟାତ୍ମିକ ଚ଼ିନ୍ତାଧାରାର ଲୋକଙ୍କୁ ବରଯାତ୍ରୀ ହିସାବରେ ସାଂଗରେ ଆଣିବାକୁ କୁହା ଯାଇଛି।

ସୂର୍ଯ୍ୟର ମାମୁ କଥା ଦେଇଛନ୍ତି, ମଦୁଆ, ଗଞ୍ଜେଡ଼ କିମ୍ବା ଅସାମାଜିକ ଲୋକ ବରଯାତ୍ରୀଙ୍କ ସାଂଗରେ ଗୋଟାଏ ବି ଆସିବେ ନାହିଁ। ସେମାନେ ଯେତେ ପ୍ରକାର

ବାଦ୍ୟଯନ୍ତ୍ର, ଗାଡ଼ି-ଘୋଡ଼ା, ବାଣ-ରୋଷଣି ଆଣିବେ, ଆଣନ୍ତୁ । ସେଥିପାଇଁ ନିରାକାର ବାବା ଅନୁମତି ଦେଇ ସାରିଛନ୍ତି । ସେସବୁ କିନ୍ତୁ ବାବାମାନଙ୍କ ଦ୍ୱାରା ନିୟନ୍ତ୍ରିତ ହେବ । କେଉଁଠି କେତେବେଳେ ବାଣ ଫୁଟାଯିବ, ସେ ସବୁ ମଧୁବାବା ହିଁ କହିବେ । ଗାଦି ମନ୍ଦିର ମୁଖ୍ୟ ଦ୍ୱାର ପର୍ଯ୍ୟନ୍ତ ଗାଡ଼ିରେ ବସି ବର ଆସି ପାରିବେ । ସେଇଠୁ ମହିମା ଗୋସେଇଁଙ୍କୁ ସମ୍ମାନ ଜଣାଇ ସେ ଚାଲି ଚାଲି ଅଖଣ୍ଡ ଜ୍ୟୋତି ମନ୍ଦିର ପର୍ଯ୍ୟନ୍ତ ଆସିବେ । ତାଂକୁ ପ୍ରଥମେ ନିୟମାନୁସାରେ ଶୁଦ୍ଧ ଶୁଚି କରାଯିବ । ସେମାନେ ଯାହା ଗହଣା, ଲୁଗାପଟା ଆଣିଥିବେ, ତାକୁ ସବୁ ଶୂନ୍ୟବାସୀ ମହିମା ଅଲେଖଙ୍କୁ ସମର୍ପଣ କରାଯାଇ କନ୍ୟା-ବରକୁ ପିନ୍ଧିବାକୁ ଦିଆଯିବ ।

କନ୍ୟାପାଇଁ ଆଶ୍ରମ ମଣ୍ଡଳରେ ସ୍ୱତନ୍ତ୍ର ଘରର ବ୍ୟବସ୍ଥା କରାଯାଇଛି । ସେ ଘରେ ଜ୍ୟୋତି ତା'ସାଂଗ ସାଥି ଓ ଅନ୍ୟମାନଙ୍କ ସହିତ ରହିଥିବ । ଶୁଭ ମୁହୂର୍ତ୍ତରେ ବର କନ୍ୟାଙ୍କୁ ନିମନ୍ତ୍ରଣ କରାଯାଇ ଫୁଲମାଳ ଆଦାନ ପ୍ରଦାନ କରାଯିବ । ଅଗ୍ନିକୁ ସାକ୍ଷୀ ରଖି ସେମାନେ ନୂତନ ଜୀବନ ଗଢ଼ିବେ ।

ଅତ୍ୟନ୍ତ ସରଳ ପ୍ରଣାଳୀରେ ବାହାଘର ସମାପ୍ତ ହେବାର ସବୁ ବ୍ୟବସ୍ଥା କରାଯାଇଛି । ବାହାଘର ଶେଷରେ ସମସ୍ତେ ବସି ମହାପ୍ରସାଦ ସେବନ କରିବେ । ବର କନ୍ୟାଙ୍କୁ ଆଶିର୍ବାଦ କରି ବିଦାୟ୍ ନେବେ ।

ବାବାଂକ ଅନୁମତି ନେଇ ସନାତନ ମହିମାଗାଦିର ଆଖପାଖ ଅଂଚଳକୁ ସଫା ସୁତର କରାଇଛନ୍ତି । ସଂଜବେଳକୁ ସମଗ୍ର ଅଂଚଳଟି ଯେମିତି ଆଲୋକମୟ୍ ହେଇ ପାରିବ, ତାହାର ବ୍ୟବସ୍ଥା କରିଛନ୍ତି ।

ଆଜି ସକାଳୁ ବାବା ସ୍ୱତନ୍ତ୍ର ଅହ୍ଲାଣିଆର ବ୍ୟବସ୍ଥା କରିଥିଲେ । ସନାତନଙ୍କ ଘରୁ ଆସିଥିବା ଚୂଡ଼ା, ଗୁଡ଼, ଦହି, ନଡ଼ିଆ, କଦଳୀ ଓ ଘିଅକୁ ଏକତ୍ର ମିଶାଇ ନିରାକାର ବାବା ଏକୋଇଶିଟି ହାଣ୍ଡିରେ ଭର୍ତ୍ତିକଲେ । ବାବା ଖୁବ୍ ଜୋରରେ 'ଗୁରୁ ମହିମା ଅଲେଖ' ବୋଲି ଡାକ ଦେଲେ । ଏକୋଇଶିଟି ଯାକ ହାଣ୍ଡିକୁ ଶୂନ୍ୟକୁ ଉଠାଇ ଅହ୍ଲାଣିଆ କଲେ । ଉପସ୍ଥିତ ଭକ୍ତମାନଙ୍କ ମଧ୍ୟରେ ତାହା ବାଣ୍ଟି ଦିଆଗଲା । ସମସ୍ତଙ୍କ ମନୋକାମନା ପୂରଣ ପାଇଁ ବାବାମାନେ ଏକ ସଂଗରେ ଗୁରୁ ମହିମା ଅଲେଖଙ୍କୁ ଡାକିଲେ ।

ସ୍ୱତନ୍ତ୍ର ଭାବରେ ଜ୍ୟୋତି ପାଇଁ ଆଉ ଥରେ ସମସ୍ତେ ମହିମା ଅଲେଖ ଧ୍ୱନି

ଦେଲେ । ବାବା ଉପସ୍ଥିତ ଭକ୍ତମାନଙ୍କୁ ବୁଝାଇ କହିଲେ - 'ଧର୍ମ ଓ ଈଶ୍ୱର ଭକ୍ତି ବିନା ମଣିଷ ଜୀବନ ପଶୁତୁଲ୍ୟ । ସତ୍ୟ-ଧର୍ମରେ ରହି ପ୍ରାତଃ ସ୍ନାନ କରି ଆତ୍ମାକୁ ପରଂବ୍ରହ୍ମଙ୍କ ନିକଟରେ ଯେଉଁମାନେ ସମର୍ପଣ କରି ପାରୁଛନ୍ତି, ସେମାନେ ଧନ୍ୟ । ଶରଣ-ଦର୍ଶନ ମାଧ୍ୟମରେ ହିଁ ଆମେ ପ୍ରଭୁଙ୍କର ନିକଟତର ହୋଇ ପାରିବା । ତେବେଯାଇ ଆମେ ସମସ୍ତେ ମୁକ୍ତି ପାଇ ପାରିବା । ଜଗତର ମଂଗଳ ଆମ ସମସ୍ତଙ୍କର କାମ୍ୟ ହେଉ' ।

ଶେଷରେ 'ଗୁରୁ ମହିମା ଅଲେଖ' ଧ୍ୱନିରେ ମହିମାଗାଦି ଅଂଚଳ କମ୍ପି ଉଠିଥିଲା ।

ବରପକ୍ଷ କନ୍ୟାପକ୍ଷ ବସି କଥା ହେଇଛନ୍ତି, ବାହାଘର ଶେଷରେ ବର ଟିକେ ଜ୍ୟୋତି ଘରକୁ ଯାଇ ବୁଲି ଆସିବ । କିନ୍ତୁ ବର କନ୍ୟା ଗାଦି ମନ୍ଦିରରୁ ହିଁ ବିଦାୟ ନେବେ । ତେଣୁ କନ୍ୟାଘର ପକ୍ଷରୁ ଯାହା ଉପହାର ଦିଆଯିବା କଥା, ସେ ସବୁ ଗାଡ଼ିରେ ଆସି ରାତି ସୁଦ୍ଧା ପହଞ୍ଚି ଯିବ, ସେ ଦାୟିତ୍ୱ ନେଇଛନ୍ତି - ଜ୍ୟୋତିର ପିଉସା ଆଉ ଅର୍ଜୁନୀ ଦାଦା ।

ରାତି ଥାଉ ଥାଉ ଜ୍ୟୋତ ପବିତ୍ର ସ୍ନାନ-ଶୌଚ ସାରି ମଠରେ ପହଞ୍ଚିବ । ସାଂଗରେ ହୀରା ଅପା ଓ ମାଇଁ ଆସିବେ । ବାହାଘର ଶେଷ ହେବା ମାତ୍ରେ ପୁଣି ଅହ୍ଲଣିଆର ବ୍ୟବସ୍ଥା ହେଉଛି । ଖାଣ୍ଟି ଗୁଆ ଘିଅରେ ଛଣା ଯାଇଥିବା ବୁନ୍ଦି ଦାନାକୁ ଗୁଡ଼ରେ ପାଗ କରାଯାଇ ସ୍ୱତନ୍ତ୍ର ଭାବରେ ଏହି ଅହ୍ଲଣିଆ ତିଆରି କରାହେଇ ରହିଛି । ବରଯାତ୍ରୀଙ୍କ ସାଂଗରେ ଭକ୍ତମାନେ ବି ଅହ୍ଲଣିଆ ପାଇବେ । ତା'ପରେ ଅନ୍ନ ପ୍ରସାଦ ଭିକ୍ଷା ହେବ । ସେଥିପାଇଁ ସବୁ ଜିନିଷ ଯୋଗାଡ଼ ହେଇ ସାରିଛି । ମଧୁବାବା ସେ କାମ ତଦାରଖ କରୁଛନ୍ତି । ପନିପରିବା, ଡାଲି ଚାଉଳ, ତେଲ ଲୁଣ, ମସଲା ସବୁ ଆଗରୁ କିଣା ସାରିଛି । ମନଭରି ସମସ୍ତ ସାଧୁ, ସନ୍ନ୍ୟାସୀ, ଭକ୍ତ ଓ ବରଯାତ୍ରୀ ଖାଇବେ ।

ସଂଧ୍ୟା ବେଳକୁ ଆଲୋକ ମାଳାରେ ମହିମା ଗାଦିର ସମସ୍ତ ମଠ ମନ୍ଦିର ଝଲସି ଉଠିଲା । ତେଲିଙ୍ଗି ବାଦ୍ୟର ମଧୁର ଝଂକାର ଏକ ଅପୂର୍ବ ପରିବେଶ ସୃଷ୍ଟି କଲା । ମଠରେ ଥିବା ସବୁ ବାବା ମନେ କରୁଛନ୍ତି, ସତେ ଯେମିତି ଆଜି ତାଂକର ଗୋଟାଏ କିଛି ବିଶେଷ ଉତ୍ସବ ଅନୁଷ୍ଠିତ ହେଉଛି । ଚାଲି ଯାଉଥିବା ଲୋକେ ପଚାରୁଛନ୍ତି, ଆଜି ମଠରେ କ'ଣ ହଉଛି କି' ?

ଆଗରୁ ଅନେକ ବାହାଘର ଅଖଣ୍ଡଜ୍ୟୋତି ମନ୍ଦିରରେ ହେଇଛି ସତ; କିନ୍ତୁ ସେ ସବୁ ଅତ୍ୟନ୍ତ ନିରାଡ଼ମ୍ବର ଭାବରେ ହେଇଛି । କେହି କେହି ବାଜା, ବାଣ ରୋଷଣିର ବ୍ୟବସ୍ଥା କରିଥା'ନ୍ତି । ସମୂହ ଭିକ୍ଷା ହୁଏ । କିନ୍ତୁ ଏଥରର ବାହାଘର ଉତ୍ସବର ସ୍ୱତନ୍ତତା ରହିଛି । ବାବାମାନଂକର ଅତିପ୍ରିୟ କନ୍ୟା ସ୍ୱରୂପିଣୀ ଜ୍ୟୋତିର ଆଜି ବାହାଘର । ନିରାକାର ବାବାଂକ ପ୍ରତି ଯେଉଁମାନଙ୍କର ଯେତିକି ଭକ୍ତି ଓ ବିଶ୍ୱାସ ରହିଛି, ତାଂକର ସେତିକି ପରିମାଣରେ ସ୍ନେହ-ଆଶୀର୍ବାଦ ଜ୍ୟୋତି ଉପରେ ରହିଛି । ବଡ଼ ମଠ, ସାନ ମଠ ଏବଂ ଯୋରନ୍ଦାରେ ଥିବା ସମସ୍ତ ମଠର ବାବା ଏଥିପାଇଁ ନିମନ୍ତ୍ରିତ ହେଇ ସାରିଛନ୍ତି ।

ନିରାକାର ବାବା ପ୍ରଭୁଙ୍କୁ ସମର୍ପଣ କରି ନୂଆ ମଠା କୌପୀନି ପରିଧାନ କରିଛନ୍ତି । ସନାତନ କେତେବେଳେ ବାବାଂଙ୍କଠାରୁ ପରାମର୍ଶ ନେଉଛନ୍ତି ତ, କେତେବେଳେ କାହାକୁ କ'ଣ କାମ ବତେଇ ଚାଲିଛନ୍ତି । ବାବାଂକ ପରାମର୍ଶ କ୍ରମେ ସନାତନ ସଭା ମଣ୍ଡପରେ ଟିକେ ଗଡ଼ି ପଡ଼ି ବିଶ୍ରାମ ନେଲେ । ସେ ପଟରୁ ଘଣ୍ଟାଘରୁ ଘଣ୍ଟାଟି ଘଣ୍ଟାକୁ ଘଣ୍ଟା କେତେଟା ବାଜିଲା ଜଣାଇ ଦେଉଥାଏ ।

ଠିକ୍ ସମୟରେ ବର ଆସି ପହଞ୍ଚି ଗଲେ ।

ଆଗରୁ ଗାଡ଼ିଯାଇ ଜ୍ୟୋତିକୁ ତାଙ୍କ ଘରୁ ନେଇ ଆସିଛି । ଶୁଭ ମୁହୂର୍ତ୍ତରେ ଅଖଣ୍ଡ ଜ୍ୟୋତି ମନ୍ଦିର ସମ୍ମୁଖରେ ଫୁଲମାଳ ଆଦାନ-ପ୍ରଦାନ ହେଇଗଲା । ମଠର ନିୟମ ଅନୁସାରେ ବାବାମାନେ ବର-କନ୍ୟାଙ୍କୁ ଆଜୀବନ ବିବାହ ବନ୍ଧନରେ ଆବଦ୍ଧ ରହିବାକୁ ପରସ୍ପରର ସୁଖ-ଦୁଃଖରେ ଭାଗି ହେବାକୁ ଅଖଣ୍ଡ ବତୀ ଆଗରେ ଶପଥ କରାଇ ନେଲେ । ବର ତରଫରୁ ତାଙ୍କ ମାମୁଙ୍କ ସହିତ ସନାତନଙ୍କର ସମୁଦି ମିଳନ ହେଲା ।

ଗୁରୁ ମହିମା ଅଲେଖ' ଧ୍ୱନିର ମଠ ପରିସର କମ୍ପି ଉଠିଲା । ସବୁ କାମ ଠିକ୍ ଠାକ୍ ଚାଲି ଥିବାରୁ ସନାତନଙ୍କୁ ପରିଶ୍ରମର ଥକ୍କା ଲାଗୁ ନଥାଏ । ବାବାମାନେ ମିଳିତ ଭାବେ ବର-କନ୍ୟାଙ୍କୁ ଦୀର୍ଘ ସୁଖ ଜୀବନ ବିତାଇବା ପାଇଁ ଆଶୀର୍ବାଦ ଦେଲେ । ବାହାଘର ଶେଷରେ ସମସ୍ତେ ଅହ୍ଲଣିଆ ପାଇଲେ ।

ଜ୍ୟୋତିର ବୋଉ ଜ୍ୱାଇଁଙ୍କୁ ସାଙ୍ଗରେ ନେଇ ବେଶ୍ ଶ୍ରଦ୍ଧାରେ ପଖାଳ ଖୋଇ ଝିଅ ବିଦା କାନ୍ଦଣା କାନ୍ଦିଲେ । ଗାଁ' ଲୋକେ ସୂର୍ଯ୍ୟଙ୍କୁ ବରବେଶରେ ଦେଖି ଆତ୍ମ ସନ୍ତୋଷ

ଲାଭ କଲେ । ଜ୍ୟୋତି ଭଳି ସୁନ୍ଦରୀ ଆଉ ଗୁଣବତୀ କନ୍ୟାକୁ ଯେମିତି ବର ଦରକାର, ଠିକ୍ ସେଇମିତି ମିଳିଛି, ପରସ୍ପର କଥାବାର୍ତ୍ତା ହେଲେ ।

ଜ୍ୟୋତି ନିରାକାର ବାବାଂକ ସହିତ ପଦେ କଥାବାର୍ତ୍ତା କରିବାକୁ ମନେ ମନେ ଚାହୁଁଥିଲା । ଶେଷ ପର୍ଯ୍ୟନ୍ତ ତାକୁ ସେ ସୁବିଧା ମିଳିଲା ନାହିଁ । ବରଂ ବାବା ନିଜେ ତାକୁ କାନ୍ଦିବାକୁ ମନା କରି ନିଜ ଭାଗ୍ୟକୁ ଆଦରି ଆନନ୍ଦରେ ବିଦାୟ ନେବାକୁ ପରାମର୍ଶ ଦେଇ ଚାଲିଗଲେ ।

ଏତେ ଶୀଘ୍ର ବିଦାୟ କାମଟା ଶେଷ ହେଇଯିବ, ଏକଥା ଜ୍ୟୋତି ଭାବି ପାରି ନଥିଲା । ଚାହୁଁ ଚାହୁଁ ବରର ଗାଡ଼ିରେ ତାକୁ ମାମୁ ନେଇ ବସେଇ ଦେଲେ । ନିଷ୍ଠୁର ଡ୍ରାଇଭର ଗାଡ଼ିଟାକୁ ଷ୍ଟାର୍ଟ କରି ରଖିଥିଲା । ବର ବସୁ ବସୁ ଗାଡ଼ି ପବନ ବେଗରେ ବିକ୍ରମପୁର ଅଭିମୁଖେ ଯାତ୍ରାକଲା । ମନ ଥିଲା, ଆଉ ଟିକେ ବାପାଙ୍କୁ ଧରି ସେ କାନ୍ଦିଥା'ନ୍ତା । ବୋଉ ଛାତିରେ ମୁଣ୍ଡ ଗୁଞ୍ଜି ଆଉ ଥରେ ସୁଁ ସୁଁ ହୋଇ ଲୁହରେ ତା'କାନିକୁ ଭିଜେଇ ଦେଇଥା'ନ୍ତା । ସେସବୁ ହେଇ ପାରିଲା ନାହିଁ ।

ଜ୍ୟୋତି ଜାଣେ, ତା'ବୋଉ ତାକୁ ଛାଡ଼ି ରହି ପାରିବ ନାହିଁ । କାଲିଠାରୁ ସେ ଖାଲି କାନ୍ଦି ଚାଲିଛି । କନ୍ୟା ବିଦା ବେଳକୁ ତା'ର ଚେତା ବୁଡ଼ି ଯାଇଥିଲା ।

ବାପାଙ୍କ ଆଖିରେ ଲୁହ ଜକେଇ ଆସୁଥିଲା । ସେ ମନକୁ ଟାଣ କରି ଏଣିକି ତେଣିକି ମିଛରେ ଚାହିଁ ରହୁଥିଲେ ।

ଜ୍ୟୋତିର ମନେ ପଡୁଥିଲା, ବାପା କଥା ଦେଇଛନ୍ତି, ଅଷ୍ଟ ମଙ୍ଗୁଳା ଦିନ ସେ ନିଜେ ଯାଇ ତାକୁ ଘରକୁ ଡ଼ାକି ଆଣିବେ ।






ଆଜି ଜ୍ୟୋତି ଆଉ ସୂର୍ଯ୍ୟକାନ୍ତର ଚଉଠି । ନୂଆ ପରିବେଶରେ ନୂଆ ମଣିଷଂକ ଗହଳିରେ ଥାଇ ମଧ୍ୟ ଜ୍ୟୋତି କୌଣସି ପ୍ରକାର ଅସୁବିଧା ଅନୁଭବ କରିନାହିଁ ।

ପିଉସୀ ଶାଶୂ ଜଣକର ବ୍ୟବହାର ଦେଖିଲେ ଜ୍ୟୋତିକୁ ଲାଗୁଛି - ସତେ ଯେମିତି ସ୍ନେହମୟୀ ଆଈ ବୁଢ଼ୀଟିଏ ନାତୁଣୀ ବୋହୂକୁ ପାଇ ଆଉ ତା'ପାଖ ଛାଡ଼ିବାକୁ ଚାହୁଁନାହିଁ ।

ଶାଶୂମା'ଙ୍କ କଥାବାର୍ତ୍ତାରୁ ଜଣା ପଡୁଛି, ସତେ ଯେମିତି ସେ କୋଟିନିଧି ପାଇଛନ୍ତି । ତାଂକର ଅନେକ ବଂଧୁ ବାନ୍ଧବ ଆସି ଭିଡ଼ ଜମେଇଛନ୍ତି, ସେମାନେ ଜ୍ୟୋତି ବିଷୟରେ ଅନେକ ଭଲ କଥା ଆଗରୁ ଶୁଣି ସାରିଛନ୍ତି । ତେଣୁ ସମସ୍ତଙ୍କର ମନରେ ତା'ପ୍ରତି ସ୍ୱତଃଶ୍ରଦ୍ଧା ବଢ଼ି ଯାଇଛି। ଛୋଟ ଛୁଆମାନେ ତା'ପାଖ ଛାଡୁ ନାହାନ୍ତି । ସାହି ପଡ଼ିଶାର ବଡ଼ ଝିଅମାନେ ତାକୁ ସବୁବେଳେ ଘେରି ରହିଛନ୍ତି ।

ସୂର୍ଯ୍ୟକାନ୍ତ ମଝିରେ ମଝିରେ କୌଣସି କାମଥିବା ଆଳରେ ଆସି ଜ୍ୟୋତିକୁ ଟିକେ କଣେଇ କଣେଇ ଚାହିଁ ଦେଇ ଚାଲି ଯାଉଛି । ଜ୍ୟୋତିର ଭାରି ଇଚ୍ଛା ହେଉଥାଏ, ସେ ଟିକେ ସୂର୍ଯ୍ୟକାନ୍ତକୁ ନିରୋଳାରେ ପାଇଲେ, କଥାପଦେ ହେଇ ଯାଆନ୍ତା । କିନ୍ତୁ ସେ ସୁଯୋଗ ପାଇ ପାରୁନାହିଁ ।

ସୂର୍ଯ୍ୟକାନ୍ତର ଡାକ୍ତର ଛାତ୍ର ବଂଧୁମାନେ ଯିଏ ବାହାଘରକୁ ଆସିଥିଲେ, ତାଂକ ଭିତରୁ କେତେଜଣ ଜ୍ୟୋତିକୁ ଭାଉଜ ଭାଉଜ ଡାକି ହସଥଟ୍ଟା ହେଉଥିଲେ, ଦୂରରୁ ଥାଇ ସୂର୍ଯ୍ୟକାନ୍ତ ତାକୁ ବେଶ୍ ଉପଭୋଗ କରୁଥିଲେ । ସେମାନେ ପୁଣି ଚଉଠି ଭୋଜି ପାଇଁ କଟକରୁ ଆସି ସାରିଲେଣି । ତାଂକର ଏକାଜିଦ ମନ ଭରି ସଂଧ୍ୟାରେ ନାଚିବେ ।

ଜ୍ୟୋତି ଅନୁଭବ କରୁଥିଲା, ଉଚ୍ଚ ଶିକ୍ଷିତ ପିଲାମାନଙ୍କର ବ୍ୟବହାର ଅତ୍ୟନ୍ତ ମଧୁର ଏବଂ ଆନନ୍ଦ ଦାୟକ। ସେମାନେ ସବୁ ଡାକ୍ତରୀ ପାଠ ପଢ଼ି ସାରିଲେଣି। ତାଂକ ଶିକ୍ଷା ଦୀକ୍ଷା ସହିତ ନିଜକୁ ତୁଳନା କଲେ, ତାକୁ ଲାଜ ମାଡ଼େ। କେବଳ ଭାଗ୍ୟବଳରୁ ସେ ଏଭଳି ସ୍ୱାମୀଟିଏ ପାଇଛି।

ଗତକାଲି ପର୍ଯ୍ୟନ୍ତ ସମସ୍ତେ ତାକୁ ଦୁର୍ବଳା, ଅବଳା ଝିଅଟିଏ ବୋଲି ଭାବୁଥିଲେ। କେବଳ ଡାକ୍ତର ସୂର୍ଯ୍ୟକାନ୍ତଙ୍କ ସହିତ ହାତଗଣ୍ଠି ପଡ଼ିଗଲା ପରଠାରୁ ସେ ଜଣେ ସମ୍ମାନୀୟା ମହିଳାରେ ପରିଣତ ହୋଇ ଯାଇଛି। ତା'ବୟସ ତୁଳନାରେ କେତେ ବଡ଼ ବଡ଼ ଯୁବକ ଯୁବତୀ ତାକୁ ଭାଉଜ, ମାଉସୀ ଓ ମାଇଁ ବୋଲି ସମ୍ବୋଧନ କରୁଛନ୍ତି। ଏମାନେ ଅବଶ୍ୟ ସୂର୍ଯ୍ୟକାନ୍ତଙ୍କଠାରୁ ବୟସରେ କନିଷ୍ଠ ଏବଂ ତାଂକ ବଂଧୁ ବାନ୍ଧବ ଓ ରକ୍ତ ସଂପର୍କର ଲୋକ। ଜ୍ୟୋତି ନୂଆ ପରିବେଶ ଆଉ ନୂଆ ସଂପର୍କ ସହିତ ଖାପ ଖୋଇବାକୁ ଚେଷ୍ଟା ଚଳାଇଛି ।

ସଂଧ୍ୟା ପୂର୍ବରୁ ତାକୁ ସଜ ହୋଇ ଯିବାକୁ କୁହା ଯାଇଥିଲା। ସୂର୍ଯ୍ୟକାନ୍ତଙ୍କର ହିସାବରେ ଭାଉଜ ଜଣେ ଆସି ଜ୍ୟୋତିକୁ ନୂଆ ଶାଢ଼ୀ, ବ୍ଲାଉଜ ବଦଳେଇବାକୁ ଦେଲେ। ଗହଣା ପତ୍ର ସବୁ ଠିକ୍ ଠାକ୍ କରିଦେଲେ। ଚନ୍ଦନ, ସିନ୍ଦୂର, ଅଳତା ଓ ନଖ ପାଲିସ୍ କେତେ କ'ଣ ଆଣି ତାକୁ ସଜେଇ ଦେଲେ ।

ବିକ୍ରମପୁର ଗାଁ'ଟି ଆଜି ଉଠୁଛି-ପଡୁଛି। ବାହାଘର ଗୀତ ମାଇକ୍‌ରେ ବାଜି ଚାଲିଛି। ତେଣେ ବାଜାବାଲା ତେଲଙ୍ଗୀ ବାଜା ବଜେଇ ଚାଲିଛନ୍ତି। ଘର ଆଗ ପଡ଼ିଆରେ ଭୋଜି ଖିଆ ହେବ, ସେଥିପାଇଁ ସଜାସଜି ହେଉଛି। ଦିନ ଥାଉ ଥାଉ ଲାଇଟ୍ ଜଳିଲାଣି। ଗାଁ' ମୁଣ୍ଡରେ ବିରାଟ 'ସ୍ୱାଗତମ୍' ଗେଟ୍ ତିଆରି ହୋଇଛି। ସେଇଠୁ ଝାଡ଼ ଲାଇଟ୍‌ର ଧାଡ଼ି ଲାଗିଛି, ଗାଁ' ଶେଷ ମୁଣ୍ଡ ପର୍ଯ୍ୟନ୍ତ। ଟେଣ୍ଟ ହାଉସ୍ ବାଲା ଢେଙ୍କାନାଳରୁ ସବୁ ଜିନିଷ ଆଣି ସଜେଇ ଦେଇଛି।

ପିଲାମାନଙ୍କ ମନୋରଞ୍ଜନ ପାଇଁ ଭାଲୁ ପୋଷାକ ପିନ୍ଧି ଦୁଇଟା ଲୋକ ନାଚୁଛନ୍ତି। ବରଫରେ ତିଆରି ମହାଦେବଙ୍କ ମୂର୍ତ୍ତି ଭୋଜି ହଲ ଦୁଆରେ ଥୁଆ ହୋଇଛି। । ବିଭିନ୍ନ ରଂଗ ବେରଂଗ ଆଲୋକ ମାଳାରେ ସୂର୍ଯ୍ୟକାନ୍ତଙ୍କର ଘର ସଜା ଯାଇଛି। ବର କନ୍ୟା ବସିବାକୁ ସ୍ୱତନ୍ତ୍ର ଭାବରେ ଦାଣ୍ଡଘର ସଜା ହୋଇଛି। ଯେଉଁମାନେ ଅତି ନିକଟ ସଂପର୍କୀୟା, ସେମାନେ କନ୍ୟା ପାଖରେ ବସିବେ। ସେଥିପାଇଁ ସ୍ୱତନ୍ତ୍ର ଆସନର ବ୍ୟବସ୍ଥା କରାଯାଇଛି।

ଜ୍ୟୋତିକୁ ସଜେଇ ସାଜେଇ ଯତ୍ନରେ ଆଣି ତା' ଜାଗାରେ ବସେଇଲେ । ସୂର୍ଯ୍ୟକାନ୍ତ ସୁନ୍ଦର କୋଟ୍ ପ୍ୟାଣ୍ଟ ପିନ୍ଧି ତା'ପାଖରେ ବସିଲା । ଅନେକ ପ୍ରତୀକ୍ଷା ପରେ ଜ୍ୟୋତି ସୂର୍ଯ୍ୟକାନ୍ତକୁ ଖୁବ୍ ନିକଟରେ ପାଇ କ'ଣ ଧୀରେ କରି କହିଦେଲା । ସୂର୍ଯ୍ୟକାନ୍ତ ହସି ହସି ବେଦମ୍ ହେଇଗଲା । ତା'ର ସାଂଗମାନେ ନାଚିବେ ବୋଲି ଆଗରୁ କଥା ହେଇଛି । ତେଣୁ ସେମାନେ ବାଜାବାଲାଂକୁ ଆଣି ବରକନ୍ୟାଂକ ଆଗରେ ଠିଆ କରେଇଲେଣି । ଚଉଠି ଭାର ସାଂଗରେ ଯେଉଁମାନେ ଆସିଥିଲେ, ସେ ଜ୍ୟୋତିକୁ ଦେଖା କରିସାରି ସମୁଦୁଣୀଙ୍କଠାରୁ ବିଦାୟ ନେଇ ଚାଲି ଗଲେଣି ।

ଖନ୍ଦାଶାଳରୁ ଖବର ଆସି ଗଲାଣି । ଭୋଜି ପ୍ରସ୍ତୁତ । ଯେଉଁମାନେ ଆଗତୁରା ଖାଇବାକୁ ଚାହିଁବେ । ସେମାନେ ଡ଼ାଇନିଂ ହଲ୍‌କୁ ଆସି ପାରନ୍ତି । ସୂର୍ଯ୍ୟକାନ୍ତର ମଉସା ସେ କଥା ବୁଝାବୁଝି କରୁଛନ୍ତି । ନିମନ୍ତ୍ରିତ ଅତିଥିମାନଙ୍କୁ ସ୍ୱାଗତ ଜଣାଇ ଉପଯୁକ୍ତ ଭାବରେ ସତ୍କାର କରିବାକୁ ସ୍ୱାଗତ ଦ୍ୱାରରେ ସୂର୍ଯ୍ୟକାନ୍ତଙ୍କ ମାମୁ-ମାଇଁ ଠିଆ ହେଇ ରହିଛନ୍ତି । ଆଖ ପାଖ ପାଞ୍ଚଖଣ୍ଡ ଗାଁ'ର ଲୋକେ ନିମନ୍ତ୍ରିତ ହେଇ ଆସିଛନ୍ତି । କଟକ ଓ ଢେଙ୍କାନାଳର ବିଶିଷ୍ଟ ଲୋକମାନେ ଭୋଜିରେ ଉପସ୍ଥିତ ରହିବେ । ତେଣୁ ଅନେକ ଗାଡ଼ି ରହିବାର ସୁବ୍ୟବସ୍ଥା କରା ଯାଇଛି ।

ସଂଧ୍ୟା ବଢ଼ିବା ସଙ୍ଗେ ସଙ୍ଗେ ଅତିଥିମାନଂକର ଭିଡ଼ ବଢ଼ି ଚାଲିଲା । ଡାକ୍ତର ଛାତ୍ରମାନେ ବାଜାବାଲାଂକ ଆଧୁନିକ ଗୀତ ସ୍ୱରରେ ତାଳ ଦେଇ ଖୁବ୍ ମଜାରେ ନାଚି ଚାଲିଲେ ।

ଅତିଥିମାନେ ଜଣେ ଜଣେ ଆସି ବର କନ୍ୟାଙ୍କୁ ଉପହାର ଓ ଆଶୀର୍ବାଦ ଦେଇ ଚାଲି ଯାଉଥା'ନ୍ତି । କେହି କେହି ପିଲାଂକ ନାଚ ଉପଭୋଗ କରୁଥା'ନ୍ତି ତ କେହି କେହି ସିଧା ଡାଇନିଂ ହଲ୍‌କୁ ଯାଇ ଭୋଜି ଖାଇବାରେ ଲାଗିଥା'ନ୍ତି ।

ହଠାତ୍ କେହି ଜଣେ ଚିତ୍କାର କଲା - 'ନିଆଁ, ନିଆଁ ଲାଗି ଯାଇଛି - ଦୌଡ଼ି ଆସ ।'

ସେହି ଚିତ୍କାର ଶୁଣି ସିଏ ଯୁଆଡ଼େ ଧାଇଁଲେ । ଦେଖିଲା ବେଳକୁ ଖନ୍ଦାଶାଳରେ ନିଆଁ ଲାଗି ଯାଇଛି । ବନ୍ଧା ଯାଇଥିବା ପାଲ, ସାମିୟାନା ଓ କପଡ଼ା ଓ୍ୱାଲ ଚାହୁଁ ଚାହୁଁ ଜଳି ପୋଡ଼ି ପାଉଁଶ ହେଇଗଲା । ନାଚୁଥିବା ପିଲାମାନେ ଲୋକମାନଙ୍କୁ ରକ୍ଷା କରିବା ପାଇଁ ପ୍ରାଣ ପଣେ ଲାଗି ପଡ଼ିଲେ । କିଏ ପାଣି ଡାଳିଲା ତ କିଏ ସାମିୟାନା ଟାଣି ଛିଡ଼େଇଲା ।

ସୂର୍ଯ୍ୟକାନ୍ତ ଜ୍ୟୋତିକୁ ଛାଡ଼ି ଖନ୍ଦାଶାଳ ଆଡ଼କୁ ଦୌଡ଼ିଲା । ଦେଖିଲା, ରୋଷେଇୟା ଦୁଇ ଜଣ ନିଆଁ ଘେର ଭିତରେ ରହି ଯାଇଛନ୍ତି । ତାଂକୁ ଶୀଘ୍ର ଉଦ୍ଧାର ନକଲେ, ସେମାନେ ନିଶ୍ଚୟ ଜୀଅନ୍ତା ଜଳିଯିବେ । ଜୀବନକୁ ପାଣି ଛଡ଼େଇ ସେ ନିଆଁ ଭିତରକୁ ଧସେଇ ପଶିଗଲା । ଅଧାପୋଡ଼ା ଜଣେ ରୋଷେଇୟାକୁ କାନ୍ଧରେ ଧରି ପଦାକୁ ନେଇ ଆସିଲା । ଆଉ ଥରେ ସାହସ କରି ସେ ନିଆଁ ଭିତରକୁ ପଶି ଯାଇଛି । ସେତିକି ବେଳେ ଗ୍ୟାସ୍ ସିଲିଣ୍ଡରରେ ନିଆଁ ଲାଗି ଭୀଷଣ ବିସ୍ଫୋରଣ ହେଲା । ଭୟଙ୍କର ଶବ୍ଦରେ ଭୋଜିସ୍ଥଳ କମ୍ପି ଉଠିଲା । ହୁ ହୁ ହୋଇ ନିଆଁ ପ୍ରବଳ ବେଗରେ ମାଡ଼ି ଚ଼ାଲିଲା ।

ଜୀବନ ବିକଳେ ଯିଏ ଯୁଆଡ଼େ ପାରିଲେ, ଧାଇଁ ପଳାଇଲେ । ଗାଁ' ଲୋକେ ଜାଗ୍ରତ ଥିବାରୁ କାହାରି ଘରେ ନିଆଁ ଲାଗି ପାରିଲା ନାହିଁ ।

ପାଞ୍ଚ ମିନିଟ୍ ପୂର୍ବରୁ ଯେଉଁଠି ନାଚ଼ ଗୀତ, ଭୋଜି, ଆନନ୍ଦ ଉତ୍ସବ ଲାଗିଥିଲା, ତାହା ଏକ ଭୟଙ୍କର ଶ୍ମଶାନରେ ପରିଣତ ହେଇଗଲା । କିଏ ପୋଡ଼ିଗଲା, କିଏ କୁଆଡ଼େ ଅଛି, କିଛି ଜଣା ପଡ଼ିଲା ନାହିଁ ।

ଜ୍ୟୋତି ନିଜ ଆସନ ଛାଡ଼ି ପଦାରେ ଠିଆ ହୋଇ ଥରୁଥାଏ । ସ୍ତ୍ରୀ ଲୋକମାନେ ବିକଳ ହୋଇ ଚ଼ିତ୍କାର କରୁଥା'ନ୍ତି । ପୁରୁଷ ଲୋକମାନେ ହୋ-ହାଲ୍ଲା କରି ଜିନିଷ ପତ୍ରକୁ ବୋହି ନେଇ ରକ୍ଷା କରୁଥା'ନ୍ତି ।

ଉପସ୍ଥିତ ଲୋକେ ନିଜ ନିଜର ପିଲାଛୁଆ ଓ ଆତ୍ମୀୟମାନଙ୍କୁ ଖୋଜି ବ୍ୟସ୍ତ ହେଉଥା'ନ୍ତି । ବଂଧୁ ବାନ୍ଧବମାନେ କିଏ କ'ଣ କୁହା କୁହି ହେଉଥାନ୍ତି, ତାହା ବୁଝି ହେଉ ନଥାଏ ।

ରାତି ଦଶଟା ବେଳକୁ ନିଆଁ ପୂରା ଲିଭିଗଲା, ଅନେକ ଖାଦ୍ୟ ଏଣେ ତେଣେ ବିଛୁଡ଼ି ହୋଇ ପଡ଼ିଥାଏ ।

ଗହଳି କମି ଆସିଲା । ଧୀରେ ଧୀରେ ଲୋକ ତାଂକ ଘରକୁ ମନ ଦୁଃଖରେ ଫେରୁଥା'ନ୍ତି । ବର କନ୍ୟା କଥା ବୁଝିବାକୁ କି ଶୁଣିବାକୁ କେହି ନଥା'ନ୍ତି । ସୂର୍ଯ୍ୟକାନ୍ତର ବୋଉ ଦୌଡ଼ି ଆସି ପୁଅ-ବୋହୂଙ୍କୁ ଖୋଜିଲେ ।

ପୀଉସୀ ଶାଶୂ ଜ୍ୟୋତିକୁ ଧରି ଘର ଭିତରୁ ଆଣିଲେ । ସେପଟେ ଶାଶୂ ବଡ଼ପାଟିରେ କହିଲେ, 'ମୋ ସୂର୍ଯ୍ୟ କାହିଁ ?

- ସୂର୍ଯ୍ୟ କାହିଁ ? ସୂର୍ଯ୍ୟ କାହିଁ ?? ସୂର୍ଯ୍ୟ କାହିଁ ?? ସମସ୍ତଙ୍କ ତୁଣ୍ଡରେ ଗୋଟିଏ ପ୍ରଶ୍ନ-ସୂର୍ଯ୍ୟ କାହିଁ ?

କିଏ ଜଣେ କହିଲା, 'ସୂର୍ଯ୍ୟ ତ ଜଣେ ରୋଷେଇୟାକୁ କାନ୍ଧରେ ପକେଇ ପଦାକୁ ଆଣିଥିଲା । ଆଉ ଥରେ ସେ ନିଆଁ ଭିତରକୁ ଯାଇଥିଲା, ସେ ଫେରିଛି କି ନାହିଁ, ମୁଁ ଦେଖିନାହିଁ' ।

ସମସ୍ତେ ଦୌଡ଼ିଲେ - ଖନ୍ଦାଘର ହେଇଥିବା ଜାଗାକୁ । ସେଠି ଏବେ ବି ନିଆଁର ଧାସ ରହିଛି । ସେ ଘରେ ଥିବା ଗ୍ୟାସ, ତେଲଡ଼ବା, ସଉଦା ପତ୍ର ସବୁ ଜଳି ପୋଡ଼ି ପାଉଁଶ ହେଇ ଯାଇଛି । ଗୋଟାଏ ଜାଗାରେ ଦୁଇଟି ଅର୍ଦ୍ଧଦଗ୍ଧ ଶରୀର ପଡ଼ିଛି । ସେମାନଙ୍କୁ ପାଉଁଶ ଗଦାରୁ ବାହାର କରାଗଲା । ସେଥିରୁ ଜଣାପଡ଼ିଲା, ଗୋଟାଏ ଶବ ରୋଷେଇୟାର ଅନ୍ୟଟି ସୂର୍ଯ୍ୟର ।

ସୂର୍ଯ୍ୟ ଆଉ ନାହିଁ । ଏ'କଥାଟା କାହାରିକୁ ଅଛପା ରହିଲା ନାହିଁ । ରୋଷେଇୟାକୁ ଉଦ୍ଧାର କରିବାକୁ ଯାଇ ସେ ଆତ୍ମ ବିସର୍ଜନ କରିଛି । ଚାରିଆଡ଼େ କାନ୍ଦ ବୋବାଳି ପଡ଼ିଗଲା ।

ଜ୍ୟୋତିର ଚେତା ବୁଡ଼ି ଯାଇଛି । ତାକୁ ଗାଁ'ଲୋକେ ଜଗି ବସିଛନ୍ତି ।

ସୂର୍ଯ୍ୟର ବୋଉ ଆଉ ପୀଉସୀଙ୍କୁ ଡାକ୍ତରଖାନାକୁ ନିଆଗଲା । ସେମାନଙ୍କର ଅବସ୍ଥା ଅତ୍ୟନ୍ତ ଖରାପ । କିଏ ଜଣେ କହିଲା - 'ସେମାନେ ଆଉ ବଞ୍ଚିବା ଅବସ୍ଥାରେ ନାହାନ୍ତି' ।

ଡାକ୍ତର ଛାତ୍ର ବଂଧୁମାନେ ମୂକ ପାଲଟି ଗଲେ । ଗାଁ'ରେ ଶୋକର ଛାୟା ଖେଳିଗଲା । ବଂଧୁ-ବାନ୍ଧବମାନେ କାନ୍ଦି କାନ୍ଦି ଘରକୁ ଫେରିଗଲେ । ରାତିକ ଭିତରେ ଖବରଟା ବିଜୁଳି ବେଗରେ ଆଖପାଖ ଅଞ୍ଚଳରେ ଖେଳେଇ ହେଇଗଲା । ଜ୍ୟୋତିର ବାପା, ବୋଉ ଓ ପୀଉସା ଗାଡ଼ି ଧରି ସେହି ରାତିରେ ବିକ୍ରମପୁରରେ ପହଞ୍ଚି ଗଲେ ।

ସୂର୍ଯ୍ୟର ମାମୁ -ମଉସା ଦୁହେଁ, ମନରେ ସାହସ ବାନ୍ଧି ଶବ ଦୁଇଟିକୁ ନେଇ ଡାକ୍ତରଖାନାକୁ ଗଲେ ।





ଶୋକର ଘନ ବାଦଲ ଡାଙ୍କି ରହିଥିବା ରାତି ପାହିଲା । ହଜାର ହଜାର ଲୋକ ଦୁର୍ଘଟଣା ସ୍ଥଳରେ ଜମା ହେଇଥା'ନ୍ତି । ଗଁଦିଆ ଥାନାବାବୁ ଗାଡ଼ିଧରି ତାଙ୍କର ସହକର୍ମୀଙ୍କ ସହ ପହଞ୍ଚି ସାରିଲେଣି । ନିଆଁ କେମିତି ଲାଗିଲା' । ଦୁର୍ଘଟଣା କାହିଁକି ହେଲା ? ପଚ଼ରା-ଉଚୁରା, ଖୋଳ-ତାଡ଼ ଆରମ୍ଭ ହୋଇଗଲା ।

ଉପସ୍ଥିତ ଲୋକମାନେ ଯିଏ ଯାହା ପାରିଲେ, ମନଗଢ଼ା କଥା କହିଲେ । ସୂର୍ଯ୍ୟର ଘର ଲୋକ କି ନିଜର ଲୋକ କେହି ନଥା'ନ୍ତି । ସେମାନେ କାଲି ରାତିରୁ ସବୁ ଡାକ୍ତରଖାନା ଯାଇଛନ୍ତି ଯେ, ଫେରି ନାହାନ୍ତି ।

କିଏ ଜଣେ ଢେଙ୍କାନାଳରୁ ଆସି ଖବର ଦେଲା ଯେ, ସୂର୍ଯ୍ୟର ଚ଼େତା ଫେରି ଆସିଲାଣି । ଦେହ ହାତ ଖାଲି ପୋଡ଼ି ଯାଇଛି । ଭଲ ହେବାକୁ ବର୍ଷେ ଦି' ବର୍ଷ ଲାଗିଯିବ । କିନ୍ତୁ ରୋଷେଇଯ୍ୟଟି ଆଉ ବଞ୍ଚି ପାରିଲା ନାହିଁ । ବିଚ଼ରା ପର ପାଇଁ ଜୀବନ ଦେଲା ।'

ସୂର୍ଯ୍ୟର ଅର୍ଦ୍ଧଦଗ୍ଧ ଶରୀରକୁ ଦେଖିଥିବା ଲୋକେ ଏହି ମନଗଢ଼ା କାହାଣୀକୁ ବିଶ୍ୱାସ କଲେ ନାହିଁ । କିନ୍ତୁ ଯେଉଁମାନେ ତାକୁ ମୋଟେ ଦେଖି ନାହାନ୍ତି, ସେମାନେ ଭଗବାନଙ୍କ ନିକଟରେ କୃତଜ୍ଞତା ଜଣାଇଲେ ।

ଜ୍ୟୋତିର ବାପା ଓ ପିଉସା ଦୁହେଁ ପାଗଳ ପ୍ରାୟ ହେଇ ଏଣେ ତେଣେ ଧାଉଁଥା'ନ୍ତି । ଲୋକଙ୍କ ମୁହଁରୁ ଏ'କଥା ଶୁଣି ସେ ଦୁହେଁ, ଉପରକୁ ହାତ ଟେକି - 'ଗୁରୁ ମହିମା ଅଲେଖ' ଚ଼ିତ୍କାର କରି ଚ଼ାଲିଲେ । ସନାତନ କହିଲେ - ହେ, ପ୍ରଭୁ ! ସୂର୍ଯ୍ୟକାନ୍ତକୁ ଭଲରେ ରଖିଥା'ନ୍ତୁ । ତା' ମାଆକୁ କହି ମୁଁ ତାକୁ ଆପଣଂକୁ ସମର୍ପଣ କରାଇ ଦେବି । ସେ ଚ଼ିରଦିନ ପାଇଁ ଆପଣଂକ ସେବାରେ ଲାଗି ରହିବ, ସନ୍ନ୍ୟାସୀ ହେଇଯିବ । ମୋ ଝିଅ ପଛେ ଅବହେଳିତା ହେଉ । ଚ଼ିର ଦୁଃଖିନୀ ହେଇ ମୋ ପାଖରେ ରହିଯାଉ । କିନ୍ତୁ ପ୍ରଭୁ ମହିମା ଗୋସାଇଁ ସୂର୍ଯ୍ୟକୁ ବଞ୍ଚେଇକି ରଖିଥା'ନ୍ତୁ ।

ଥରକୁ ଥର ସନାତନ ଘର ବାହାର ହେଇ ଶୂନ୍ୟକୁ ହାତଟେକି ଏହିପରି ପ୍ରାର୍ଥନା ଆଉ ମାନସିକ କରୁଥା'ନ୍ତି । ତାଂକର ବ୍ୟାକୁଳତାକୁ ଦେଖି ସାଧାରଣ ଲୋକେ ଧୈର୍ଯ୍ୟ ଧରି ପାରୁ ନଥା'ନ୍ତି । ସମସ୍ତଙ୍କ ଆଖିରେ ଲୁହ ।

ଜ୍ୟୋତି ବୋଉର ତଣ୍ଟି ପଡ଼ି ଗଲାଣି । ସେ ଆଉ ଚିତ୍କାର କରି କାନ୍ଦି ପାରୁ ନାହାନ୍ତି । ସେ ଜ୍ୟୋତିକୁ କୁଣ୍ଢେଇ ଧରି ଖାଲି ମୁଣ୍ଡ କୋଡ଼ି ହେଉଛନ୍ତି ।

ମଝିରେ ମଝିରେ ଜ୍ୟୋତିର ଚେ଼ତା ଫେରି ଆସୁଛି, କମ୍ପାଉଣ୍ଡର ବାବୁ ଆସି ତାକୁ ଦେଖି ଯାଇଛନ୍ତି । ସେ କହିଛନ୍ତି, ଯେତେ ଶୀଘ୍ର ସମ୍ଭବ, ମାଆ-ଝିଅଙ୍କୁ ଏ' ଜାଗାରୁ ଆଉ କୁଆଡ଼େ ନେଇଯାଅ । ବେଶି ଲୋକ ଜମା ହେଲେ , ତା'ର ଚେ଼ତା ଫେରିବାରେ ଅସୁବିଧା ହେବ ।

ଗାଆଁଟା ଯାକର ଲୋକେ ବିକଳ ମନରେ ଅପେକ୍ଷା କରିଥା'ନ୍ତି, ତାଜା ଖବର ପାଇଁ । କିନ୍ତୁ ଖବର କିଛି ଆସୁ ନଥାଏ ।

ଗୋଟାଏ ଗାଡ଼ିରେ କେତେଜଣ ଅଲେଖ ଧର୍ମାବଲମ୍ବୀ ବାବା ଆସି ସେଇଠି ପହଞ୍ଚିଲେ । ସେଥିରେ ମଧୁବାବା ବି ଥିଲେ । ସେ ଅତ୍ୟନ୍ତ ଗମ୍ଭୀର ଦିଶୁଥିଲେ । କାହାରିକୁ କିଛି ନକହି ସିଧା ସେ ଜ୍ୟୋତି ପାଖକୁ ଗଲେ । ସେଠାକାର ପରିସ୍ଥିତି ଅତ୍ୟନ୍ତ ଶୋକାକୁଳ ଥିଲା ।

ସନାତନ ତାଂକୁ ଦେଖି କାନ୍ଦି କାନ୍ଦି ତଳେ ଲୋଟି ପଡ଼ିଲେ । ମଧୁବାବା ପୋଲିସ ବାବୁଂକ ସହିତ କଥାବାର୍ତ୍ତା କରି ଜ୍ୟୋତି ଏବଂ ତା' ମାଆଙ୍କୁ ଗାଡ଼ିରେ ବସାଇ ମଧୁପୁର ନେଇ ଚା଼ଲି ଆସିଲେ ।

ମଧୁପୁର ଗାଁ'ରେ ସେମାନେ ପହଞ୍ଚିବା ପୂର୍ବରୁ ସେଠାରେ ଭୟଙ୍କର ପରିବେଶ ସୃଷ୍ଟି ହୋଇ ଯାଇଥାଏ । ଦୁର୍ଘଟଣା କଥା, ଏ'କାନରୁ ସେକାନ ହେଇ ସମସ୍ତଙ୍କ ପାଖରେ ପହଞ୍ଚି ଯାଇଥାଏ । ଚା଼ରିଆଡ଼ ଶୂନଶାନ । ସମସ୍ତେ ସମସ୍ତଙ୍କ ମୁହଁକୁ କେବଳ ବ୍ୟାକୁଳ ହେଇ ଚା଼ହୁଁଥା'ନ୍ତି । ନିହାତି ଦରକାରି କଥା ପଦ ପଦକରେ ସମସ୍ତଙ୍କର କାମ ଚ଼ଳି ଯାଉଥାଏ ।

ସନାତନକୁ କୁହା ଯାଇଛି, ସେ ସୂର୍ଯ୍ୟକୁ ଦେଖିବାକୁ ଯିବେ । ତାଂକ ମାଆଙ୍କର ଅବସ୍ଥା ଭଲ ହେବାଯାଏ, ବିକ୍ରମପୁରରେ ରହିବେ । ଜ୍ୟୋତି ଏବଂ ତାଙ୍କ ମାଆଙ୍କ କଥା ବୁଝିବା ପାଇଁ ମଧୁପୁରରେ ଅନେକ ଲୋକ ଅଛନ୍ତି । ଜ୍ୟୋତିର ପିଉସାଂକୁ କୁହା ଯାଇଛି,

ସଂଧ୍ୟା ସୁଦ୍ଧା ତାଜା ଖବର ଧରି ସେ ମଧୁପୁରକୁ ଫେରି ଆସିବେ। କିନ୍ତୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ସେ ତ ଫେରି ନାହାନ୍ତି କିମ୍ବା କୌଣସି ଖବର ଆସିନାହିଁ ।

ନିରାକାର ବାବା ସୂର୍ଯ୍ୟାସ୍ତ କାଳୀନ ସାଷ୍ଟାଙ୍ଗ ଶରଣ ଶେଷ କରି ସିଧା ଚ଼ାଲିଲେ, ଜ୍ୟୋତି ପାଖକୁ। ତାଂକ ସାଂଗରେ ମଧୁବାବା ଓ ଅନ୍ୟ ତିନି, ଚ଼ାରିଜଣ ବାବା ମଧ୍ୟ ଆସିଥା'ନ୍ତି। ନିରାକାର ବାବା ପ୍ରଥମ ଥର ପାଇଁ ମଧୁପୁର ଗାଆଁ ଭିତରକୁ ଆସିଛନ୍ତି। ସେ ଜ୍ୟୋତିର ମଥାରେ ହାତ ବୁଲେଇ ଆଣି - 'ଗୁରୁ ମହିମା ଅଲେଖ' ଧ୍ୱନି ଦେଲେ।

ଜ୍ୟୋତିର ଚ଼େତା ଫେରି ଆସିଲା। ତା' ପାଟିରୁ ବାହାରି ପଡ଼ିଲା - 'ବାବା ! ଏସବୁ କ'ଣ ହେଇଗଲା' ?

ନିରାକାର ବାବା ଆଖି ବନ୍ଦ କରି ମହିମା ଗୋସାଇଁଙ୍କୁ ସ୍ମରଣ କରି କହିଲେ- 'ମା ଜ୍ୟୋତି ! ଯାହା ହେବାର ଥିଲା, ତାହା ହିଁ ହେଲା । ଏତିକି ବେଳେ ଆମକୁ ଦରକାର ଅସୀମ ସାହସ ଆଉ ଧୈର୍ଯ୍ୟ' ।

ତା'ପରେ ବାବା ଠିଆ ହେଲେ । ତାଂକୁ ଘେରି ରହିଲେ, ଅନ୍ୟ ବାବାମାନେ। ସମସ୍ତେ ଏକ ସଂଗେ 'ଗୁରୁ ମହିମା ଅଲେଖ'ଙ୍କୁ ପ୍ରାର୍ଥନା କରି ଚ଼ାଲିଲେ। ପରିବେଶଟା ଅଳ୍ପ ସମୟ ମଧ୍ୟରେ ବଦଳିଗଲା। ଉପସ୍ଥିତ ବଂଧୁ ବାନ୍ଧବ, କ୍ରନ୍ଦନ ରତ ପିଲାମାନେ ଏବଂ ଜ୍ୟୋତିର ବୋଉ ସମସ୍ତେ ବାବାମାନଙ୍କ ସହିତ ମିଶି 'ମହିମା ଗୋସାଇଁ' ଙ୍କୁ ପ୍ରାର୍ଥନା କରି ଚ଼ାଲିଲେ।

ଧୀରେ ଧୀରେ ଜ୍ୟୋତି ବି ଉଠି ଠିଆ ହେଲା। ସେ ମଧ୍ୟ ପ୍ରାର୍ଥନାରେ ମିଶିଗଲା।

ଦେଖଣାହାରୀଙ୍କର ଦୃଢ଼ ବିଶ୍ୱାସ ହେଲା ଯେ, ନିରାକାର ବାବା କୌଣସି ଏକ ମନ୍ତ୍ର ଶକ୍ତି ବଳରେ ସମସ୍ତଙ୍କୁ ସାନ୍ତ୍ୱନା ପ୍ରଦାନ କରୁଛନ୍ତି। ଅଯଥା କଥା କହି ତାଂକୁ କେହି ଅନ୍ୟମନସ୍କ କରିବା ଉଚ଼ିତ ନୁହେଁ ।

ମଧୁବାବା ପରିସ୍ଥିତି ପ୍ରତି ତୀକ୍ଷ୍ଣ ଦୃଷ୍ଟି ଦେଇଥା'ନ୍ତି ।

- ଜ୍ୟୋତିର ପିଉସା ଆସି ଏତିକିବେଳେ ସେଇଠି ପହଞ୍ଚିଗଲେ। ମଧୁବାବା ତାଂକୁ କଥା ନକହିବାକୁ ଇସାରା ଦେଲେ। ସେ ମଧ୍ୟ ଚୁପ୍ ଚୁପ୍ ରହି ସମୂହ ପ୍ରାର୍ଥନାରେ ଯୋଗଦେଲେ।

ପ୍ରାର୍ଥନା ଶେଷରେ ସମସ୍ତଙ୍କୁ ବସିବାକୁ ପରାମର୍ଶ ଦେଇ ନିରାକାର ବାବା

କହିଲେ- 'ଗୀତାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି -'ଆମେମାନେ କିଛି ସାଂଗରେ ଧରି ଆସି ନଥିଲୁ, କିମ୍ବା ସାଂଗରେ କିଛି ଧରି ପରଲୋକକୁ ଯାଇ ପାରିବୁ ନାହିଁ ।

ଠିକ୍ ସେହିପରି, ଜନ୍ମ ପୂର୍ବରୁ 'ଆମେ କେହି କାହାରି ପୁଅ, ଝିଅ କିମ୍ବା ବାପା, ମା' ନଥିଲୁ କିମ୍ବା ମୃତ୍ୟୁପରେ ଆମେ ଆମର ବାପା-ମା'ଙ୍କର କୋଳରେ ପୁଣି ଥରେ ଜନ୍ମ ହେଇ ପାରିବା ନାହିଁ । ଏ'ସଂସାର ହେଉଛି, ଏକ ରଂଗମଞ୍ଚ । ଅଭିନୟ କରିବା ପାଇଁ ଆମକୁ ସୃଷ୍ଟିକର୍ତ୍ତା ଏ'ସଂସାରକୁ ଅଳ୍ପ ସମୟ ପାଇଁ ସୁଯୋଗ ଦିଅନ୍ତି । ଯାହାର ଅଭିନୟ ଶେଷ ହେଇଯିବ, ସେ ଆଉ ମଞ୍ଚ ଉପରକୁ ଆସି ପାରିବ ନାହିଁ ।

- ଆମର ଅଭିନୟ ଚାଲିଛି । ତେଣୁ ଆମେ ନିର୍ଭୁଲ୍ ଭାବରେ ନିଖୁଣ ଭାବରେ ଅଭିନୟ କରିବା ଉଚିତ୍ । ଯେଉଁ ଅଭିନେତାଂକର ଅଭିନୟ ଶେଷ ହେଇ ଯାଇଛି, ତାକୁ ଝୁରି ଝୁରି ଅଧୈର୍ଯ୍ୟ ହେବା ହେଉଛି, ମାୟା ମୋହ ଗ୍ରସ୍ତ ମଣିଷର କାର୍ଯ୍ୟ । ଯାହା ହେବାର ଅଛି, ତାହା ନିଶ୍ଚୟ ହେବ ।

ଯାହା ହେବାର ଥିଲା, ତାହା ହେଇଗଲା । ବର୍ତ୍ତମାନ ହେଉଛି, ସବୁଠାରୁ ମୂଲ୍ୟବାନ ସମୟ । ଆଗାମୀ ଦିନ କିପରି ସୁଖମୟ, ଆନନ୍ଦମୟ ହେବ, ସେଥିପାଇଁ ଚିନ୍ତା କରିବାର ସମୟ ହେଉଛି - ବର୍ତ୍ତମାନ ।

- ଜ୍ୟୋତି ହେଉଛି, ଏକ ଅସାଧାରଣ ନାରୀ । ତା'ପାଇଁ ଦୀର୍ଘପଥ ପଡ଼ିଛି । ସୁଖର ଦିନ ତାକୁ ଅପେକ୍ଷା କରି ରହିଛି । ସେଥିପାଇଁ କେହି ଅଧୈର୍ଯ୍ୟ ହେବା ଉଚିତ୍ ନୁହେଁ । ଆପଣମାନେ ଦୁର୍ଘଟଣା ବିଷୟରେ ବାରମ୍ବାର ଆଲୋଚନା ନକରି, ବର୍ତ୍ତମାନ ଆମର କର୍ତ୍ତବ୍ୟ କ'ଣ ହେବା ଉଚିତ୍, ତାହା ହିଁ ବିଚାର କରନ୍ତୁ ।

- ସନାତନ ଫେରିଲେ, ମୋ ପାଖକୁ ପଠାଇବ । ମୁଁ ତାକୁ ସବୁ କଥା ବୁଝେଇ ଦେବି । ବର୍ତ୍ତମାନ ସମସ୍ତେ ସ୍ନାନ-ଶୁଚି ହେଇପଡ଼ । ଆଉ ଅଧିକ ସମୟ ଅପେକ୍ଷା କରିବା ଉଚିତ୍ ନୁହେଁ । ସୂର୍ଯ୍ୟକଥାକୁ ସବୁଦିନ ପାଇଁ ଭୁଲିଯାଅ ।

- ମଧୁବାବା, ଆପଣମାନଙ୍କୁ ଆହୁରି ଧୈର୍ଯ୍ୟ ଓ ସାହସ ଦେବା ପାଇଁ ଆଜି ଏହି ଗାଆଁରେ ରହିବେ । କୌଣସି ପ୍ରକାର ସମସ୍ୟା ହେଲେ, ମୋ ପାଖକୁ ଲୋକ ପଠାଇବ ।'

ଦୀର୍ଘ ସମୟ ଧରି ସମସ୍ତେ ପ୍ରାର୍ଥନାରେ ବ୍ୟସ୍ତ ରହିଥିଲେ । ବାବାଂକ ଧର୍ମ ଉପଦେଶ ଶୁଣି ସମସ୍ତେ ଧୈର୍ଯ୍ୟ ଓ ସାହସ ଧରି ସ୍ନାନ-ଶୁଚି ପାଇଁ ବାହାରିଲେ ।

ଜ୍ୟୋତିର ମଉସା ବାବାଂକ କଥା ଶୁଣି ଆଉ କିଛି କହିବାକୁ ସୁଯୋଗ ପାଇଲେ ନାହିଁ । ସେ ମଧ୍ୟ ସ୍ନାନ-ଶୁଚି ପାଇଁ ଚାଲିଗଲେ । ନିରାକାର ବାବା ଅନ୍ୟ ବାବାମାନଂକ ସହିତ ମିଶି ମଠକୁ ଫେରିଗଲେ ।

ରାତି ପାହାନ୍ତାରେ ସନାତନ ଆସି ଯୋରନ୍ଦାରେ ପହଞ୍ଚିଲେ । ବାଟରେ ସେ କାହାରିକୁ କିଛି କହି ନାହାନ୍ତି । ବାଟରେ ଭାବୁଥିଲେ, ଜ୍ୟୋତି ଆଗରେ ସେ କେମିତି ମୁହଁ ଦେଖାଇବେ ? କି କଥା କହି ତାକୁ ସାନ୍ତ୍ୱନା ଦେବେ ??

କାଲି ଦିନଟା ଯାକ ଏ'ପଟ ସେପଟ ଧାଁ-ଦଉଡ଼ କରି ଦେହର ଅବସ୍ଥା ଖରାପ ହେଇ ଯାଇଛି । ଅଖିଆ-ଅପିଆ ରହି ମୁହଁ ଶୁଣି କଳାକାଠ ପଡ଼ିଛି । ଡାକ୍ତରଖାନାରେ ପହଞ୍ଚି ସେ ଯାହା ଦେଖିଲେ, ତାକୁ ଆଉ ବର୍ଣ୍ଣନା କରିବା ସମ୍ଭବ ନୁହେଁ । ସୂର୍ଯ୍ୟକାନ୍ତର ଶବ ଆଉ ଚିହ୍ନି ହେବା ଅବସ୍ଥାରେ ନଥିଲା । ବୁଢ଼ୀ ଦି'ଜଣଙ୍କର ଦୁଃଖ ଦେଖିଲେ, ଚଣ୍ଡାଳ ବି ଧୈର୍ଯ୍ୟ ଧରି ରହି ପାରିବ ନାହିଁ ।

- ଏଣେ ତାଂକର ବଂଧୁ-ବାନ୍ଧବ ଏବଂ ଗାଁ'ଲୋକଙ୍କର କଟୁକଥା ଓ ଜ୍ୟୋତିର ନିନ୍ଦାକୁ ସେଠାରେ ସହି ହେଲାନାହିଁ । ଶେଷରେ ସୂର୍ଯ୍ୟର ମାଇଁ ସନାତନଂକୁ ସିଧା ସଳଖ କହିଦେଲେ -'ତମରି ଅଲକ୍ଷଣୀ ଝିଅ ଜ୍ୟୋତି ପାଇଁ ହିଁ ଆମେ ସୂର୍ଯ୍ୟକୁ ହରେଇଲୁ । ଏଭଳି ଅଲକ୍ଷଣୀ ଝିଅକୁ ଜନ୍ମ ଦେବା ପୂର୍ବରୁ ତମେ ମାରି ଦେଇ ପାରିଲ ନାହିଁ ?'

- ଆଉ ଜଣେ କିଏ, ତାଂକର ସଂପର୍କୀୟ କହିଲେ - 'ଝିଅଟାର ଲକ୍ଷଣ ଭଲନାହିଁ । ବାହା ହେଉ ହେଉ ସ୍ୱାମୀକୁ ଖାଇ ସାରିଲାଣି । ଏମିତିକା କୁଳ ବୁଡ଼େଇ ଝିଅ ଘରେ ରହିଲେ, ଜଣ ଜଣକି ସମସ୍ତଙ୍କୁ ଖାଇଦବ ।

- କୋଉ ଅଶୁଭ ବେଳାରେ ଅଲକ୍ଷଣୀଟାଏ ଜନ୍ମ ହେଇଥିଲା କେଜାଣି, ଗାନ୍ଧାରୀ ଭଳି ବାହା ହଉ ହଉ ବରକୁ ଆଗ ଖାଇଲା ।

- ବୁଝିଲ ବୁଢ଼ା! ତମ ଭାଗ୍ୟ ଭଲ । ବାବାଜୀଟା ଆସି ସେ ମା'ଝିଅଙ୍କୁ ନେଇ ଚାଲିଗଲା । ନ ହେଲେ, ମୁଁ ତା'ଛାତି ଉପରେ ଠିଆ ହେଇ ତା'ଡ଼ାହାଣୀ ଜିଭଟାକୁ ଟାଣି ଉପାଡ଼ି ଦେଇ ଥାଆନ୍ତି ।'

- କୋଉଠୁ ଗୋଟାଏ ଡାହାଣୀକୁ ଧରି ଆଣି ଆମ ଦେବତା ପରା ପୁଅ ବେକରେ ବାନ୍ଧି ଦେଲ ଯେ, ସବାଖାଇଟାଏ । ସିଏ ହଉଛି, ଜୀଅଁନ୍ତା ଡାହାଣୀ ।

- ମନେରଖ, ସେ ପୋଡ଼ାମୁହିଁକୁ କେବେ ବି ଆମ ଗାଁ'କୁ ଆଣିବ ନାହିଁ । ହବ ତ ତମେ ଯାଇ ତା' ବେକରେ କଳସୀ ବାନ୍ଧି ଦେଇ ବ୍ରାହ୍ମଣୀ ନଈରେ ପକେଇ ଦବ। ନହେଲେ ଅଲକ୍ଷଣୀଟା ଆହୁରି କାହାର କୁଳ ବୁଡ଼େଇବ' ।

ସନାତନ କାବା ହେଇ ସମସ୍ତଙ୍କ ମୁହଁକୁ ବଲ-ବଲ କରି ଚ଼ାହିଁ ରହିଥିଲେ। କାହାକୁ କ'ଣ କହିବେ ? ଜ୍ୟୋତିର କେଉଁ ଗୁଣ ଦେଖି ଏମାନେ ଏମିତି କଟୁକଥା କହୁଛନ୍ତି, ସେ କିଛି ବୁଝି ପାରୁ ନଥା'ନ୍ତି ।

ଶେଷରେ ସୂର୍ଯ୍ୟର ମାମୁ ଆସି କହିଲେ, 'ଆଉ କାହିଁକି ତମେ ରହିଛ? ଆମେ ଆମ କଥା ବୁଝିଦେବୁ। ତମେ ଆଉ ଆମକୁ କଷ୍ଟ ଦିଅନା। ବହୁତ ହେଇଗଲା। ତମେ ହିଁ ଆମର ସର୍ବନାଶ କରିଦେଲ।' ତମ ଝିଅ ତ ଘରକୁ ଯାଇ ସାରିଲାଣି, ଆଉ ତମର ଆମର କିଛି ସଂପର୍କ ନାହିଁ । ଚ଼ାଲିଯାଅ ମୋ ଆଗରୁ' ।

- ପ୍ରଭୁ ମହିମା ଅଲେଖ ନାମକୁ ସ୍ମରଣ କରି ସନାତନ ଏତେ ବେଳଯାଏ, ଧୈର୍ଯ୍ୟ ଧରି ଠିଆ ହେଇଥିଲେ। ଶେଷରେ ସୂର୍ଯ୍ୟର ମାମୁ କଥା ଆଉ ସହି ହେଲା ନାହିଁ । କାହାକୁ ସେ କ'ଣ କହିବେ ? ଏମିତି ପରିସ୍ଥିତିରେ କୁଆଡ଼େ ଯିବେ ?'ତେଣେ ମଧୁବାବା କହି ଯାଇଛନ୍ତି , ସମୁଦୁଣୀଙ୍କ ଅବସ୍ଥା ଭଲ ନହେବା ପର୍ଯ୍ୟନ୍ତ ଏଇଠି ଅଟକି ରହିବା ପାଇଁ ।

- ଶେଷରେ ତାଙ୍କର ଧୈର୍ଯ୍ୟଚ୍ୟୁତ ହେଲା। ମନଟା ତାଙ୍କର ପୋଡ଼ିଗଲା। ଏକା ନିଶ୍ୱାସକେ ଦୌଡ଼ିଲା ପରି ସେ ଚ଼ାଲିବା ଆରମ୍ଭ କରିଦେଲେ। ଆଉ ସେ ପଛକୁ ଚ଼ାହିଁ ନାହାନ୍ତି ।

ଦେବୀ ପ୍ରତିମା ଜ୍ୟୋତିର ନିନ୍ଦାଗୁଡ଼ାକ ତାଂକ ମନକୁ ଘାଣ୍ଟି ଚ଼କଟି ପକାଉ ଥାଏ। ସେ ମନେ ମନେ ଠିକ୍ କରି ନେଲେ, 'କାଲି ସକାଳେ ନିରାକାର ବାବାଂକୁ ଦେଖା କରି ସବୁ ଦୁଃଖ ଜଣେଇବି । ସେ ଯାହା ଆଦେଶ ଦେବେ, ତାକୁ ହିଁ ପାଳନ କରିବି' ।






ମଠରେ ବାବାଙ୍କୁ ଦେଖାକରି ସନାତନ ମନ ଭରି କାନ୍ଦିଲେ । ସବୁ କଥା ଗୋଟି ଗୋଟି କରି ବର୍ଣ୍ଣନା କଲେ ।

ବାବା ଆଖି ଡଳଡ଼ଳ କରି ପ୍ରଭୁ ମହିମା ଗୋସେଇଁଙ୍କୁ ସ୍ମରଣ କରି କହିଲେ - 'ବାବା ସନାତନ ! ତୁମେ ଯାହା ଜ୍ୟୋତି ବିଷୟରେ ଶୁଣିଛ, ସେଥିପାଇଁ ମୋଟେ ବ୍ୟସ୍ତ ହେବା ଦରକାର ନାହିଁ, କିମ୍ବା ସେସବୁ କଥାକୁ ଆଉ ଥରେ କୌଣସି ସ୍ଥାନରେ ପ୍ରକାଶ କରିବା ଉଚିତ୍ ନୁହେଁ । କାରଣ - ଯେଉଁମାନେ ସୂର୍ଯ୍ୟକୁ ଭଲ ପାଉଥିଲେ, ତାକୁ ହରେଇ ଥିବାରୁ ସେମାନେ ତାଂକର ବିକୃତ ମାନସିକତାର ପରିଚୟ ଦେଲେ ।

ପ୍ରାଚୀନ ଯୁଗରୁ ଆମ ଦେଶରେ ଏକ ଦୁଷ୍ଟ ପରଂପରା ଗଢ଼ି ଆସୁଛି । ଘରେ ଯଦି କାହାର କିଛି କ୍ଷତି ହେବ, ସେଥିପାଇଁ ନୂଆ କରି ଘରକୁ ଆସିଥିବା ନାରୀଟିଏ ଦୋଷୀ ହେବ । ଯାହା କିଛି ଭଲ ହେବ, ସେଥିପାଇଁ ଅନ୍ୟମାନେ ବାହାଦୂରୀ ପାଇବେ । ତମେ ଭାଙ୍ଗି ପଡ଼ିଲେ ଚଳିବନାହିଁ । ଧୈର୍ଯ୍ୟଧର । ମନକୁ ଟାଣ କର ।

ଯାହା ହେବାର ଥିଲା, ହେଇଗଲା । ଏଥିପାଇଁ କେବଳ ଭଗବାନ ହିଁ ଦାୟୀ । ତୁମେ ଯେଉଁ ଭର୍ତ୍ସନା ଶୁଣିଛ, ତାହା ମଧ୍ୟ ତାଂକ ପାଇଁ । କାଲି ସଂଧ୍ୟାରେ ମୁଁ ଯାଇ ଜ୍ୟୋତି ସହିତ ଅନ୍ୟମାନଙ୍କୁ ପ୍ରାର୍ଥନା କରାଇ ଆସିଛି । ତୁମେ ଘରକୁ ଫେରିଲେ, କୌଣସି କଥା ଆଲୋଚନା ନକରି କେବଳ କାମରେ ଲାଗିରୁହ । ଯାହା ହେବାର କଥା, ସବୁ ବଳେ ବଳେ ହେଇ ଚାଲିବ ।

ବାବାଂକ କଥା ଶୁଣି ସନାତନଙ୍କର ଦୁଃଖ ଜର୍ଜରିତ ମନ, ନିଆଁରେ ପାଣି ପଡ଼ିଲା ପରି ଶୀତଳ ହେଇଗଲା । ସେ ମଠରେ ସ୍ନାନ-ଶୁଚି କାର୍ଯ୍ୟ ଶେଷ କରି ବାବାଂକ ସହିତ ଅନ୍ନ ଭିକ୍ଷା କଲେ । ଆତ୍ମା ଶାନ୍ତି କରି ଘରକୁ ଫେରିଲେ । ଘର ଭିତରେ ଜ୍ୟୋତି, ତା'ର ମାଆ ଓ ଅନ୍ୟମାନେ କିଏ କୁଆଡ଼େ ଅଛନ୍ତି, ସହଜରେ ଜଣା ପଡୁ ନଥାଏ ।

ହୀରା ମୁହଁ ଶୁଖେଇ ଆସି କହିଲା -'ଭାଇ ! ମୁଁ ଆଜି ଘରକୁ ଫେରି ଯାଇଥା'ନ୍ତି। କିନ୍ତୁ ଏଭଳି ଅବସ୍ଥାରେ ମୁଁ ଜ୍ୟୋତିକୁ ଛାଡ଼ି ଯାଇ ପାରିବି ନାହିଁ । ସେ ମୋତେ ମିନିଟିଏ ବି ଛାଡ଼ିବାକୁ ରାଜି ନାହିଁ। ଛୁଆଟାକୁ ସାରା ରାତି ଜ୍ୱର । ଖାଲି ଚମକୁଛି। ମୁଁ ତାକୁ କୋଳରେ ଜାକି ବସିଛି। କେହି କିଛି ଖାଇ ନାହାନ୍ତି। ଆସ ସମସ୍ତେ ମିଶି କ'ଣ ଚୂଡ଼ା ମୁଢ଼ ଦିଇଟା ଅଛି, ଖାଇ ଦବା ।'

ହୀରାର ଉପସ୍ଥିତ ବୁଦ୍ଧି ଫଳରେ ଜ୍ୟୋତି, ତା' ବୋଉ ସହିତ ଅନ୍ୟମାନେ ବସି ଗୋଟିଏ ଜାଗାରେ ଜଳଖିଆ ଖାଇଲେ। କାହାରି ତୁଣ୍ଡରେ ଭାଷା ନାହିଁ। ସମସ୍ତେ ଯେମିତି ମୂକ ପାଲଟି ଯାଇଛନ୍ତି।

ମଧୁବାବା ସକାଳୁ ଉଠି ସୂର୍ଯ୍ୟୋଦୟ ସମୟରେ ସାକ୍ଷୀଙ୍କ ଶରଣ ପାଇଁ ମଠକୁ ଯାଇଥିଲେ। ସେ ଆସି ପହଞ୍ଚିଲେ। ସମସ୍ତଙ୍କୁ ଏକାଠି କରାଇ ପୁଣି ପ୍ରାର୍ଥନା କରାଇଲେ ।

ତା' ପରଦିନ ବିକ୍ରମପୁରରୁ ଖବର ଆସିଲା। ଜ୍ୟୋତିର ଶାଶୂ ଓ ପୀଉସୀ ଶାଶୂ ଟିକେ ସୁସ୍ଥ ଅଛନ୍ତି। ଦିନେ ଦି'ଦିନ ପରେ ସେମାନେ ଘରକୁ ଫେରିବେ। କିନ୍ତୁ ପୀଉସୀ ଶାଶୂର ମୁଣ୍ଡ ଖରାପ ହେଇ ଯାଇଛି। ତା'ର ଚେ଼ତା ଆସିବା ପରେ ସେ ଖାଲି ହସୁଛି, ନହେଲେ କାନ୍ଦୁଛି। ତକିଆକୁ କୋଳରେ ଧରି ଛୋଟ ଛୁଆକୁ ଖେଳେଇଲା ପରି ଅଭିନୟ କରୁଛି। ମଝିରେ ମଝିରେ ସୂର୍ଯ୍ୟ - ସୂର୍ଯ୍ୟ ଚି଼କ୍ରାର କରି ପଦାକୁ ବାହାରି ପଳାଉଛି। ସେଥିପାଇଁ ତାକୁ ଦି'ଜଣ ଲୋକ ଦିନରାତି ଜଗି ବସିଛନ୍ତି। ଡାକ୍ତର କହିଛନ୍ତି, ତା'ସାଙ୍ଗରେ କେହି କିଛି କଥାବାର୍ତ୍ତା କରିବେ ନାହିଁ। ଧୀରେ ଧୀରେ ତା'ର ପାଗଳାମୀ ଛାଡ଼ିଯିବ ।

ସନାତନ ଏ' ଖବର ଶୁଣି ଦୁଇହାତ ଉପରକୁ ଟେକି 'ଗୁରୁ ମହିମା ଅଲେଖ' ଧ୍ୱନି ଦେଇ କହିଲେ, 'ପ୍ରଭୁ ! ଦୁଃଖିନୀ ମହିଳା ଦୁଇଜଣଙ୍କୁ ସୁସ୍ଥ କରି ଦିଅନ୍ତୁ । ତାଙ୍କ ମନରେ ଶକ୍ତି ଓ ସାହସ ଭରି ଦିଅନ୍ତୁ। ମୋ ଝିଅ ପାଇଁ ସେମାନେ ଯେମିତି ନିନ୍ଦା କି ଅପମାନ ନପାଆନ୍ତି, ପ୍ରଭୁ' !

ଜ୍ୟୋତି ସେ ଘରେ କାନ୍ଥକୁ ଆଉଜି ବସିଛି। ତା' ବୋଉ ଆଖିରୁ ଲୁହ ଶୁଖିନାହିଁ। କଥା କଥାକେ କାନ୍ଦ ।

ସନାତନଙ୍କୁ ଦେଖି ପକାଇ ସେ କହି ଚା଼ଲିଲେ, 'ତମେ ଏ'ସବୁ କ'ଣ କଲ? ଲକ୍ଷ୍ମୀ ପ୍ରତିମାକୁ ନେଇ କାହିଁକି ତମେ ଗୋବର ଗାଡ଼ିଆରେ ପକାଇ ଦେଲ ?? ସିଏ ତମର କି' ଅପରାଧ କରିଥିଲା ???

- ନିରାକାର ବାବାଂକୁ ଆମେ ଭରସା କରିଥିଲେ । ସିଏ ଆମକୁ ଠକି ଦେଲେ । ଆମର ସବୁ ଧର୍ମ-କର୍ମର ଫଳ କ'ଣ ଏଇୟା ?

- ଆମେ ସବୁ ଯାକ ପାପୀ । ମହାପାପୀ । ଆମ ଜୀବନର ସୁଖ ନାହିଁ । ନିଷ୍ଠୁର ଭଗବାନ ଆମର ସୁଖକୁ ସହି ପାରିଲେ ନାହିଁ । କ'ଣ ଆମେ ଅପରାଧ କରିଥିଲୁ ?

- ସବୁ ଯାକ ଦଣ୍ଡ ଭଗବାନ ମୋ ଉପରେ ଢାଳି ଦେଇଥା'ନ୍ତେ । ମୋ ଉପରେ ଯଦି ଚଡ଼କ ପଡ଼ିଥାନ୍ତା । ମୁଁ ତାକୁ ମୁଣ୍ଡପାତି ସହି ଯାଇଥା'ନ୍ତି । ସେ ପାରିରେ ଥାଇ ମୋ ଝିଅ ଜ୍ୟୋଇଁଙ୍କର ସୁଖ ଦେଖି ବରଂ ସୁଖୀ ହୋଇଥା'ନ୍ତି । ଏତେ ବଡ଼ ଦଣ୍ଡ ମୋ ଛୁଆଙ୍କ ଉପରେ କାହିଁକି ଦେଲେ ?

- ତମେ ତ ସାରା ଜୀବନ ସେହି ଠାକୁର ମହାଦେବ ପୁଣି ମହିମା ଗୋସାଇଁଙ୍କ ସେବାରେ ଲାଗି ରହିଥିଲ । ମୋ ଜାଣିବାରେ ତମେ କାହାରି କେବେ କ୍ଷତି କରିନାହଁ । ମୁଁ ଚଣ୍ଡାଳୁଣୀ ନିଶ୍ଚୟ କାହାର ବଢ଼ା ହେଇଥିବା ଭାତରେ ଧୂଳି ଦେଇଛି । ନହେଲେ ମୋ ସୁଖକୁ ଭଗବାନ କାହିଁକି ସହି ପାରିଲେ ନାହିଁ ?

ସନାତନ ତଳକୁ ମୁହଁ କରି ନୀରବରେ ଜ୍ୟୋତି ବୋଉର କାନ୍ଦମିଶା କଥା ଶୁଣୁଥିଲେ । ସବୁ ପ୍ରଶ୍ନକୁ ମନେ ମନେ ସମୀକ୍ଷା ବି କରୁଥିଲେ । ଅଜାଣତରେ ତାଂକ ଆଖିରୁ ଧାର ଧାର ଲୁହ ଗଡ଼ି ଯାଉଥାଏ । କୌଣସି ଗୋଟିଏ ପ୍ରଶ୍ନର ଉତ୍ତର ଦେବାକୁ ସେ ଅକ୍ଷମ । ନିଜକୁ ଅତ୍ୟନ୍ତ ଅସହାୟ ମନେ କରୁଥିଲେ । ଗାମୁଛାରେ ମୁହଁକୁ ପୋଛିଲେ ସନାତନ ।

ଜ୍ୟୋତିର ପିଉସା ଦୂରରେ ପଡ଼ିଥିବା ଚୌକିରେ ବସି ସମସ୍ତଙ୍କ କାର୍ଯ୍ୟ କଳାପକୁ ଲକ୍ଷ୍ୟ କରୁଥିଲେ । ସେ ଉଠି ଆସି କହିଲେ - 'ଭାଇ ! ଆପଣ ବିପଦ ସମୟରେ ଏମିତି ନିଜକୁ ଅସହାୟ ମନେ କଲେ, ପିଲାମାନେ କେମିତି ଚଳିବେ ?'

- ଚାଲ, ମଠଆଡ଼େ ବୁଲି ଆସିବା । ଭାଉଜଂକୁ ହୀରା ବୁଝେଇ ଦେଇ ପାରିବ' ।

- ସନାତନ ତାଂକ ଭିଣେଇଙ୍କ ସହିତ ପୁଣି ମଠକୁ ବାହାରିଲେ । ନିରାକାର ବାବା ତାଂକଠାରୁ ସୂର୍ଯ୍ୟଘରର ଖବର ଶୁଣିସାରି କହିଲେ, ଜ୍ୟୋତିର ବାହାଘର ହେଇଛି ସତ, କିନ୍ତୁ ସେମାନେ ସ୍ୱାମୀ-ସ୍ତ୍ରୀ ହେଇ ପାରି ନାହାନ୍ତି । ଯଦିଓ ଅଗ୍ନିକୁ ସାକ୍ଷୀରଖି ସେମାନେ ପତି-ପତ୍ନୀ ହେବାକୁ ଶପଥ ଗ୍ରହଣ କରିଥିଲେ, କିନ୍ତୁ ଭଗବାନ ସେ ଶପଥକୁ ଭାଂଗି ଦେଲେ ।

- ଏଭଳି ପରିସ୍ଥିତିରେ ଜ୍ୟୋତିକୁ ପାରଂପାରିକ ରୀତିରେ ଶୁଦ୍ଧି ହେବାକୁ ପଡ଼ିବ ନାହିଁ କିମ୍ବା ଜ୍ୟୋତି ବିଧବା ନାରୀରେ ପରିଗଣିତ ହେଇ ପାରିବ ନାହିଁ । ତା'ର ବିବାହ କାର୍ଯ୍ୟ ଅସଂପୂର୍ଣ୍ଣ ରହିଯାଇଛି । ତେଣୁ ଜ୍ୟୋତି କୁମାରୀ ହିସାବରେ ଗଣ୍ୟ ହେବ ।

ସେ ତମର କନ୍ୟା, ଆମର କନ୍ୟା, ମଠର କନ୍ୟା ଆଉ ସମସ୍ତଙ୍କର କନ୍ୟା ହେଇ ରହିବ । ତା'ର ବିବାହ କାର୍ଯ୍ୟଟିକୁ ତମକୁ, ଆମକୁ ଏବଂ ଜ୍ୟୋତିକୁ ଏକ ଦୁଃସ୍ୱପ୍ନ ବୋଲି ମନେ କରିବାକୁ ପଡ଼ିବ । ତେବେ ଯାଇ ପରିସ୍ଥିତି ସ୍ୱାଭାବିକ ହେଇ ପାରିବ । ତାଂକ ଘରର ଅବସ୍ଥା ତ ଏଇମିତି । ପୁରୁଷ ଲୋକ କେହି ନାହାନ୍ତି, ତାଂକ ଘର କଥା ବୁଝିବାକୁ । ତେଣୁ ତାଂକ ଘରୁ ଖବର ଆସିଲେ, ପରିଷ୍କାର ଭାବରେ କହିଦେବ; ଜ୍ୟୋତି ଆଉ ତାଂକ ଘରକୁ ଯାଇ ପାରିବ ନାହିଁ । ବରଂ ଦଶାହ ଦିନ ସେ ଏଇଠି ମୁଣ୍ଡ ଧୋଇ ଗାଧୋଇ ପଡ଼ିବ । ତାଂକ ସହିତ ସବୁଦିନ ପାଇଁ ସ୍ନେହ, ଶ୍ରଦ୍ଧା ସହାନୁଭୂତି ରହିଥାଉ । କିନ୍ତୁ ଜ୍ୟୋତି ତାଂକ ଘରକୁ ଆଉ ଯିବା ଠିକ୍ ହେବନାହିଁ ।'

ବାବାଂକ ପରାମର୍ଶକୁ ଶିରୋଧାର୍ଯ୍ୟ କରି ସେମାନେ ମଠରେ ଅନ୍ନ ଭିକ୍ଷା କରି ଘରକୁ ଫେରିଲେ ।

ବାହାଘର ଆଗରୁ ସୂର୍ଯ୍ୟର ଫଟୋଟିଏ ତା' ପଢ଼ା ଟେବୁଲ ଡ୍ରରେ ଥିଲା । ତାକୁ ଜ୍ୟୋତି କାଢ଼ି ନିଜ ଟେବୁଲ ଉପରେ ସଜେଇ ରଖିଛି । ତା'ପର ଦିନ ସେ ଫଟୋ ଉପରେ ଦୁଇଟା ଫୁଲ ରଖିଥିଲା । ଆଜି ସେ ହୀରା ଅପାକୁ ଅନୁରୋଧ କରିଛି, ଫଟୋଟିକୁ ଯୋରନ୍ଧା ବଜାରକୁ ନେଇ ଭଲ କରି ବନ୍ଧେଇ ଆଣିବାକୁ । ହୀରା ଅପା ବୁଝିଗଲେ, ଜ୍ୟୋତି ଚ଼ାହୁଁଛି - ସୂର୍ଯ୍ୟକୁ ସେ ଚିରଦିନ ପାଇଁ ମନ ପ୍ରାଣର ଦେବତା କରି ରଖିବ । ନିୟମିତ ଫୁଲ ଚ଼ନ୍ଦନ ଦେଇ ପୂଜା କରିବ । ତା' ବ୍ୟତୀତ ସେ ଆଉ କାହାରିକୁ ପତି ଭାବରେ ଗ୍ରହଣ କରି ପାରିବ ନାହିଁ । ତେଣୁ ସେ ଜ୍ୟୋତି ଇଛା ଅନୁସାରେ ଫଟୋଟିକୁ ନେଇ ବନ୍ଧେଇ ଆଣିବାକୁ ବଜାର ପଠେଇ ଦେଲେ ।





ଆକାଶରେ କଳା ବାଦଲ ଘୋଟିଯାଏ । ଝଡ଼ ଲାଗିରହେ । ଲୋକେ ଅସ୍ତବ୍ୟସ୍ତ ହେଇ ପଡ଼ନ୍ତି । ପୁଣି ଆକାଶ ନିର୍ମଳ ହୁଏ, ଲୋକେ ଭୁଲି ଯାଆନ୍ତି, ଝଡ଼ି ବର୍ଷାର ଦୁଃଖ କଷ୍ଟ ।

ବାତ୍ୟା ଆସେ । ଘର ଦ୍ୱାର, ଗଛ ଲତାକୁ ଭାଙ୍ଗି ଚୂରମାର କରିଦିଏ । ଗୃହଶୂନ୍ୟ ମଣିଷ ବିକଳ ହୁଏ । ଶୋଇ ପଡ଼ିଥିବା ଗଛ କଟାଯାଏ । ଭାଙ୍ଗି ପଡ଼ିଥିବା ଡାଳ ଶୁଖିଯାଏ । ରାସ୍ତାଘାଟ ଗଛବିନା ଶ୍ରୀହୀନ ଦିଶେ । କିଛି ଦିନ ପରେ ଗଛରେ ନୂଆ ପତ୍ର କଅଁଳେ । କଟା ଯାଇଥିବା ଗଛମୂଳରେ କୁଆଁ କେନା ବାହାରେ । ଭାଂଗି ଯାଇଥିବା ଘର ଜାଗାରେ ପୁଣି ନୂଆଘର ଗଢ଼ାହୁଏ ।

ମଣିଷ ତା'ର ପୁରୁଣା ଘରଠାରୁ ଆଉ ଟିକେ ଭଲ କରି, ମକବୁତ୍ କରି ନୂଆଘର ତିଆରି କରେ । ପ୍ରକୃତି ଶ୍ରୀହୀନ ବୃକ୍ଷ-ଲତାକୁ ପୁନର୍ଜୀବନ ଦେଇ ଆହୁରି ଅଧିକ ଶ୍ୟାମଳା, ପତ୍ର ବହୁଳ କରିଦିଏ । ଏହା ହେଉଛି, ପ୍ରକୃତିର ନିୟମିତ କାର୍ଯ୍ୟ ।

- ଜୀବ ଜଗତ ପ୍ରକୃତି ଉପରେ ଯେତେ ଅତ୍ୟାଚାର କରି ଚାଲିଲେ ବି ସେ ଡରି ଯାଏ ନାହିଁ । ତାକୁ ଯେତେ ପ୍ରଦୂଷିତ କଲେ ବି ସେ ତାକୁ ନିର୍ମଳ କରିଚାଲେ । ଖାଲକୁ ପୋତି ପକାଏ । ଉଚ୍ଚକୁ ଭାଙ୍ଗି ସମତଳ କରିଦିଏ । ଛୋଟକୁ ବଡ଼ କରେ । ଶକ୍ତିଶାଳୀକୁ ନିର୍ବଳ କରିଦିଏ । ଦୁର୍ବଳକୁ ସବଳ କରାଏ । କ୍ଷତକୁ ପୂରଣ କରେ । ଭୋକିକୁ ଖାଦ୍ୟ ଦିଏ । ଶୋଷିକୁ ପାଣି ଯୋଗାଏ । ତା' ନିକଟରେ ସମସ୍ତେ ପରାଜୟ ସ୍ୱୀକାର କରନ୍ତି । ଧନ୍ୟ ସେହି ପ୍ରକୃତି । କାହାରିକୁ ଦେଖା ନଦେଇ, ସେ ସବୁ କାମ ପ୍ରତ୍ୟେକ ପ୍ରାଣୀଂକ ମଂଗଳ ପାଇଁ କରିଦିଏ ।

- ପ୍ରକୃତିକୁ କେହି କେହି ସମୟ କହିଥା'ନ୍ତି । ସମୟ ହିଁ ସବୁ କିଛିକୁ ବଦଳାଇ ଦେଇଥାଏ । ପରିବର୍ତ୍ତନ ହେଉଛି, ସମୟର ଧର୍ମ । ପ୍ରତ୍ୟେକ ମୁହୂର୍ତ୍ତରେ ସେ

ପରିବର୍ତ୍ତନ କରି ଚାଲିଛି । ଆଜିର ମନ କାଲିକୁ ନଥାଏ । ଆଜିର ଶିଶୁ କାଲିକୁ ଯୁବକ ହୋଇଯାଏ । ଆଜିର ଯୁବକ କାଲିକୁ ବୃଦ୍ଧ ହେଇଯାଏ । ଏଇ ତ ପରିବର୍ତ୍ତନ ।

ଏହା ମଧ୍ୟରେ ବର୍ଷଟିଏ ବିତି ଯାଇଛି । ବର୍ଷଟିଏ ମଣିଷ ପାଇଁ କିଛି କମ୍ ନୁହେଁ । ସମସ୍ତେ ବର୍ଷେ ଲେଖା ବଢ଼ି ଯାଇଛନ୍ତି । ସମସ୍ତଙ୍କର ଆୟୁଷ ବର୍ଷେ ଲେଖା କମି ଯାଇଛି । ଋତୁ ଜନ୍ମା ପ୍ରାଣୀମାନେ ମୃତ୍ୟୁବରଣ କରି ପୁଣିଥରେ ଜନ୍ମ ନେଇ ସାରିଲେଣି ।

ଜ୍ୟୋତି ଏବେ ମଠକୁ ନିୟମିତ ଆସୁଛି । ବାବାଂକଠାରୁ ଧର୍ମ ଉପଦେଶ ଶୁଣୁଛି । ମଠର ସେବା କାର୍ଯ୍ୟରେ ମନ ଲଗାଉଛି । କିନ୍ତୁ ସେଦିନର ଜ୍ୟୋତି ଆଉ ଆଜିର ଜ୍ୟୋତି ଭିତରେ ବହୁତ ଫରକ୍ । ବାଳିକା ଜ୍ୟୋତି ଥିଲା, ଚଳ ଚଞ୍ଚଳା ଝରଣାଟିଏ । କନକନିଆଁ ହରିଣୀଟିଏ । ଆଜିର ଜ୍ୟୋତି ହେଇ ଯାଇଛି, ଗୋଟାଏ ପୂର୍ଣ୍ଣଗର୍ଭା ନଦୀଟିଏ । ଧୀର ସୁଶୀଳା ବଉଳା ଗାଈଟିଏ ।

- ଏବେ ତା'ର କାର୍ଯ୍ୟ ପ୍ରଣାଳୀ ଯଥେଷ୍ଟ ଧୀର, ମଛର ତଥା ପୋଷାକ ପରିଛଦ ଆହୁରି ଶୃଙ୍ଖଳିତ ଓ ସଂଯତ ହେଇ ଯାଇଛି । ତା' ସହିତ କଥା ହେବାକୁ ଭକ୍ତମାନଙ୍କୁ ବି ଆଉ ଥରେ ଭାବିବାକୁ ପଡୁଛି ।

ବାବାଂକ ପରାମର୍ଶ ଅନୁସାରେ କେହି ଜ୍ୟୋତିକୁ ସୂର୍ଯ୍ୟ କିମ୍ବା ତା' ଶାଶୂଘର କଥା ପଚାରୁ ନାହାନ୍ତି । ନିରାକାର ବାବା ଲକ୍ଷ୍ୟ କରୁଛନ୍ତି, ଧୀରେ ଧୀରେ ଜ୍ୟୋତି ସ୍ୱାଭାବିକ ଅବସ୍ଥାକୁ ଫେରି ଆସିଲାଣି । ମନଖୋଲି ହସି ପାରୁଛି । ନିଜ ଜୀବନର ବଡ଼ ଦୁର୍ଘଟଣାକୁ ସେ ଆଉ ଦୁଃଖ ବୋଲି ଧରି ରଖିନାହିଁ । ନିଜକୁ ସେ ବେଶ୍ ଦୃଢ଼ମନା, ସାହସୀ ଏବଂ ଆତ୍ମ ନିର୍ଭରଶୀଳା ମହିଳା ଭାବରେ ଗଢ଼ି ତୋଳିବାକୁ ଚେଷ୍ଟା କରୁଛି ।

ସନାତନଙ୍କୁ ବାବା କହିଛନ୍ତି, 'ସବୁ ଠିକ୍ ହେଇଯିବ । ସମୟ ହିଁ ସବୁ ବଦଳେଇ ଦେବ । ମୁଁ କିଛିଦିନ ପାଇଁ ନେପାଳର ଖେରବାରୀ କୁଟୀକୁ ଯିବାକୁ ଚାହୁଁଛି । ମଧୁବାବା ମୋ ସାଂଗରେ ଯିବେ । ଅନ୍ୟ ଭକ୍ତ ଓ ବାବାମାନେ ତ ଅଛନ୍ତି । ତମେ ନିୟମିତ ଆସି ମଠ ସେବା କରି ଯାଉଥିବ । ଜ୍ୟୋତିକୁ କେବେ ବି କୌଣସି ପରିସ୍ଥିତିରେ ଦୁଃଖ ଦେବନାହିଁ । ସେ ଯାହା ଚାହୁଁଛି, ତାହା ହିଁ କରୁ । ତା' ଉପରେ ମୋର ଗଭୀର ବିଶ୍ୱାସ ଏବଂ ଆସ୍ଥା ରହିଛି । ସିଏ ହିଁ ଆମ ସମସ୍ତଙ୍କର ଜ୍ୟୋତି' ।

କେନ୍ଦୁଝର ଟୁଙ୍ଗୀରୁ ଜଣେ ନୂଆ କରି ମାନସ ବାବା ଆସି ଏବେ ମଠରେ ରହୁଛନ୍ତି । ସେ ଏବେ ତ୍ୟାଗୀ ଅବସ୍ଥାରେ ହିଁ ଅଛନ୍ତି । ତାଙ୍କର ଗତିବିଧି ଲକ୍ଷ୍ୟ କରି ପୁଣି ତାଂକୁ ବୈରାଗୀ କରାଯିବ । ବୈରାଗୀରୁ ଦାସ ପଦବୀକୁ ଯିବାକୁ ପ୍ରାୟ ଚାରିପାଞ୍ଚ ବର୍ଷ ଲାଗିଯିବ ।

ମାନସ ବାବା ଜଣେ ସତ୍ୟନିଷ୍ଠ, ଧର୍ମ ପରାୟଣ । ଯୁବ ସନ୍ନ୍ୟାସୀ ମଣିଷ ପରି ମଣିଷଟିଏ । ଜଣେ ଉଚ୍ଚ ଶିକ୍ଷିତ, ତେଜଦୀପ୍ତ ଯୁବ ସନ୍ନ୍ୟାସୀ ତାଙ୍କ ମନରେ ଲୋଭ, ମୋହ କି ଅହଂକାର ନାହିଁ । ମଧୁବାବା ତାଂକୁ ମଠର ନୀତି ନିୟମ ବିଷୟରେ ତାଲିମ ଦେଇଛନ୍ତି । ମହିମା ଗୋସାଇଁଙ୍କ ଉପଦେଶକୁ ମାନସ ବାବା ଅତ୍ୟନ୍ତ ନିଷ୍ଠାର ସହିତ ପାଳନ କରୁଛନ୍ତି ।

ସେଦିନ ସନାତନ ଯାଇ ଦେଖନ୍ତି, ମାନସ ବାବାଂକୁ ମଧୁବାବା ଗୁରୁ ଉପଦେଶ ଦେଇ କହୁଛନ୍ତି - 'ଉପଦେଶ ସାର ପୁସ୍ତକରେ ଲେଖାଅଛି - ସୂର୍ଯ୍ୟଙ୍କ ପ୍ରତି ଅବଲୋକନ କଲେ, ଚକ୍ଷୁ ଯେପରି ନଷ୍ଟ ହୋଇଯାଏ, ଠିକ୍ ସେହିପରି ନାରୀମାନଙ୍କ ମୁଖକୁ ଅବଲୋକନ କଲେ, ସନ୍ନ୍ୟାସୀମାନଙ୍କର ତେଜ ନଷ୍ଟ ହେଇଯାଏ । ଯେଉଁମାନେ ସର୍ବଦା ଲୋକ ସଂସର୍ଗକୁ ସର୍ପ ସଙ୍ଗ ତୁଲ୍ୟ ଜ୍ଞାନ କରିଥା'ନ୍ତି । ଯେଉଁ ବିରାଗୀ ପୁରଷ ସୁନ୍ଦରୀ ରମଣୀକୁ ଶବ ଦେହବତ୍ ଜ୍ଞାନ କରି ଦୂରେଇ ରହନ୍ତି; ସେହି ପୁରୁଷ ହିଁ ପରମହଂସ ନାମରେ ଅଭିହିତ ହୋଇ ମୁକ୍ତିଲାଭ କରିଥା'ନ୍ତି । ତେଣୁ ବାକ୍ୟ, ମନ ଓ କର୍ମ ଦ୍ୱାରା ନାରୀକୁ ତ୍ୟାଗ କରିବାକୁ ପଡ଼ିବ ।

- ସନ୍ନ୍ୟାସୀ ଓ ଭିକ୍ଷୁକମାନଙ୍କ ପାଇଁ ପ୍ରସ୍ତର ବା ଦାରୁ ନିର୍ମିତ ଯୁବତୀକୁ ମଧ୍ୟ ସ୍ପର୍ଶ କରିବା ନିଷେଧ କରାଯାଇଛି । ଶଙ୍କରାଚାର୍ଯ୍ୟ ନାରୀମାନଙ୍କୁ ନର୍କର ଦ୍ୱାର ସ୍ୱରୂପ ବର୍ଣ୍ଣନା କରି ଲେଖିଛନ୍ତି - 'ଦ୍ୱାରଂ କି ମେକନ୍ନରକସ୍ୟ ନାରୀ' ।

- ସେହିପରି ଦିବାନିଦ୍ରା, ବୃଥାନ୍ନ ଭୋଜନ, ସ୍ତ୍ରୀକଥା ଆଲୋଚନା, ଶ୍ୱେତବସ୍ତ୍ର ପରିଧାନ ଓ ହିରଣ୍ୟ ଗ୍ରହଣ ହେଉଛି - ସନ୍ନ୍ୟାସୀମାନଙ୍କର ପତନର ଛଅଟି କାରଣ ।'

ଯେହେତୁ ତୁମେ ଜଣେ ନବଯୁବକ । ତୁମକୁ ଏଥିପ୍ରତି ଅତ୍ୟନ୍ତ ଯତ୍ନବାନ୍ ହେବାକୁ ପଡ଼ିବ । ତେବେ ଯାଇ ତୁମେ ତୁମର ସପ୍ତ ପୁରୁଷକୁ ଉଦ୍ଧାର କରିବାକୁ ସମର୍ଥ ହେବ' ।

ସେହିଦିନରୁ ସନାତନ ଲକ୍ଷ୍ୟ କରିଛନ୍ତି, ମଧୁବାବାଂକ ଉପଦେଶକୁ ମାନସ ବାବା ଅକ୍ଷରେ ଅକ୍ଷରେ ପାଳନ କରି ଆସୁଛନ୍ତି ।

କୌଣସି ପରିସ୍ଥିତିରେ ସେ ମୁହଁଟେକି ନାରୀ ମୁହଁକୁ ଚାହାଁନ୍ତି ନାହିଁ । ତାଂକର ଯୁବା ବୟସର ସଂଯମତା ଏବଂ ମହିମା ଧର୍ମ ପ୍ରତି ନିଷ୍ଠାକୁ ଦେଖି ଅନ୍ୟ ଭକ୍ତମାନେ ଅତ୍ୟନ୍ତ ପ୍ରୀତ । ନିରାକାର ବାବା ଦିନେ ମଠର ଅନ୍ୟ ବାବାମାନଂକୁ ବସାଇ କହିଲେ, 'ଯେହେତୁ ଆମେ କାଲିଠାରୁ ନେପାଳ କୁଟିକୁ ଯାତ୍ରା କରୁଛୁ । ବର୍ଷକ ପାଇଁ ମାନସ ବାବା ହେବେ - ଏ'ମଠର ପରିଚାଳକ । ଏହି ମଠର ମାନ-ଇଜ୍ଜତ ସହିତ ଆମମାନଂକର ସମ୍ମାନ ବି ଜଡ଼ିତ ହେଇ ରହିଛି ।

ଆମ ମଠ ପାଇଁ ଜଣେ ଉଚ୍ଚ ଶିକ୍ଷିତ ନିଷ୍ଠାବାନ୍ ବାବାଙ୍କର ଆବଶ୍ୟକତା ଥିଲା । ମହିମା ଗୋସାଇଁଙ୍କ ଜୀବନ ଦର୍ଶନ ଓ ମହିମା ଧର୍ମର ସାରତତ୍ତ୍ୱକୁ ଲିପିବଦ୍ଧ କରି ସୁନ୍ଦର ପୁସ୍ତକଟିଏ ପ୍ରକାଶ କରିବାକୁ ମୁଁ ଦୀର୍ଘ ଦିନରୁ ଚେଷ୍ଟା ଚଳାଇ ଥିଲି । ଏଥିପାଇଁ ଜଣେ ପୂର୍ଣ୍ଣ ସମୟ ଦେବାଭଳି ଉପଯୁକ୍ତ ସହକାରୀଙ୍କର ଦରକାର ଥିଲା ।

ଯାହାହେଉ ମହିମା ଗୋସାଇଁଙ୍କର ଇଚ୍ଛା ଅନୁସାରେ ମାନସ ବାବା ଆସି ଏଠାରେ ପହଞ୍ଚି ଯାଇଛନ୍ତି । ବୋଧହୁଏ, ତାଙ୍କରି ଦ୍ୱାରା ଏହି କାମଟି ହେଇ ପାରିବ । ତାଙ୍କୁ ଅନ୍ୟ ସମସ୍ତ ଭକ୍ତ ଓ ବାବା ଯଥା ଶକ୍ତି ସାହାଯ୍ୟ କରିବେ ।

ମାନସ ବାବାଙ୍କ କାର୍ଯ୍ୟ କଳାପକୁ ଲକ୍ଷ୍ୟ କରି ଅନ୍ୟମାନେ ମନ୍ତବ୍ୟ ଦେଇଥିଲେ, ମାନସ ବାବା ନିଶ୍ଚୟ ଆମମାନଙ୍କର ଆଶା ପୂରଣ କରି ପାରିବେ । ତାଙ୍କର ଦୃଢ଼ ମନୋବଳ ଅଛି । ମହିମା ଧର୍ମ ଉପରେ ଗଭୀର ବିଶ୍ୱାସ ବି ରହିଛି ।

ଆଜି ନିରାକାର ବାବା ବର୍ଷକ ପାଇଁ ବାହାରକୁ ଚାଲିଯିବେ । ତାଙ୍କ ସହିତ ଭେଟିବାକୁ ବାପା ବୋଉଙ୍କ ସହିତ ଜ୍ୟୋତି ଆସି ମଠରେ ପହଞ୍ଚିଛି । ବାବାଙ୍କୁ ଦେଖାକରି ଜ୍ୟୋତି ତାଙ୍କୁ କେତୋଟି ପ୍ରଶ୍ନ ପଚାରିବାକୁ ସ୍ଥିର କରିଥାଏ । ତା'ର ଭାଗ୍ୟ, ଭବିଷ୍ୟତ କଥା ମଧ୍ୟ ପଚାରି ବୁଝିବ । ବାବାଙ୍କୁ ଦେଖି ପକାଇବା ମାତ୍ରେ ସେ ଆଉ କୋହ ସମ୍ଭାଳି ପାରିଲା ନାହିଁ, କିମ୍ବା ମନର କଥା କହି ପାରିଲା ନାହିଁ ।

ବାବା ଜ୍ୟୋତିକୁ ସାନ୍ତ୍ୱନା ଦେଇ କହିଲେ, 'ମା' ଜ୍ୟୋତି ! ତୋ' ଉପରେ ଆମ ସମସ୍ତଙ୍କର ଆଶିର୍ବାଦ ରହିଛି । ପ୍ରଭୁ ମହିମା ଗୋସାଇଁଙ୍କର ଯାହା ନିର୍ଦ୍ଦେଶ, ତାକୁ ହିଁ ଆମେ ପାଳନ କରି ଚାଲିବା । ମଠରେ ଅନ୍ୟ ସବୁ ଭକ୍ତ ଓ ବାବା ଅଛନ୍ତି ।

- ନୂଆ କରି ଯେଉଁ ମାନସ ବାବା ଆସିଛନ୍ତି, ତାଙ୍କୁ ମୁଁ ତୋ' ଜୀବନ କାହାଣୀ କହି ସାରିଛି । ସେ ଜଣେ ଦରଦୀ ପ୍ରାଣର ନିଷ୍ଠାବାନ ବାବା । ଏଠାରେ ତାଙ୍କୁ ଗୋଟାଏ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ମୁଁ ଦେଇ ଯାଉଛି । ସେ କାର୍ଯ୍ୟରେ ତୁ ମଧ୍ୟ ସହଯୋଗ କରିବୁ । ମଠକୁ ଯେମିତି ଆସୁଥିଲୁ, ସେମିତି ଆସିବୁ । ଏତିକି ମନେ ରଖିବୁ, ଦୁନିଆରେ ଯାହା କିଛି ହେଉଛି, ସେ ସବୁ ଗୁରୁ ମହିମା ଅଲେଖ ଗୋସାଇଁଙ୍କ ଇଚ୍ଛା ଆଉ ନିର୍ଦ୍ଦେଶରେ ହିଁ ହେଉଛି । ଆମେ ମଣିଷ କେବଳ କର୍ତ୍ତବ୍ୟର ଦାସ, ନିମିତ୍ତ ମାତ୍ର ।'

ଜ୍ୟୋତି ମୁଣ୍ଡ ତଳକୁ କରି ବାବାଂକ କଥା ଶୁଣି ଚାଲିଥିଲା । ତା' ଆଖିରୁ ଧାର ଧାର ଲୁହ ବହି ଚାଲିଥିଲା । କୋହ ଭରା କଣ୍ଠରେ ସେ ବାବାଙ୍କୁ ପଚାରି ଦେଲା - 'ବାବା ଆପଣ ପରା ମୋ କୋଷ୍ଠି ଦେଖି କହିଥିଲେ,'ମୋ କୋଳରେ ଦେବ ଶିଶୁଟିଏ ଜନ୍ମଲାଭ କରିବ ବୋଲି । ଏତେ ବଡ଼ ମିଥ୍ୟା କଥାଟା ଆପଣ କେମିତି, କାହିଁକି କହିଥିଲେ ବାବା' !

ହତବାକ୍ ହେଇ ପଡ଼ିଲେ, ନିରାକାର ବାବା । କନ୍ୟା ସ୍ୱରୂପିଣୀ, ସ୍ନେହର ଜ୍ୟୋତି ଯେଉଁ ପ୍ରଶ୍ନ ପଚାରିଛି, ତା'ର ସେ କି ଉତ୍ତର ଦେବେ ? ତାଂକର ମନେ ପଡ଼ିଗଲା, ଜ୍ୟୋତି କୋଷ୍ଠିକୁ ସେ ଭଲ କରି ଗଣନା କରି ଦେଖିଥିଲେ। କିନ୍ତୁ ପ୍ରଭୁଙ୍କର ଇଛା ତ ଭିନ୍ନ।

ଉପସ୍ଥିତ ବୁଦ୍ଧି ଖଟାଇ ସେ କହିଦେଲେ, 'ବୁଝିଲୁ ମା ଜ୍ୟୋତି ! ଏ'ସଂସାର ହେଉଛି, ଗୋଟାଏ ମାୟାର ପଞ୍ଜୁରୀ। ଏଠାରେ ସମ୍ଭବ ଆଉ ଅସମ୍ଭବ ମଧ୍ୟରେ ଦୂରତା ବହୁତ କମ୍। ବୈଚିତ୍ର୍ୟମୟ ଏହି ସଂସାରରେ ଉଂସୁନା ଧାନ ବି ଗଜା ହେଇଛି। ଯତ୍ନରେ ରଖା ଯାଇଥିବା ବିହନ ଅନେକ ସମୟରେ ଗଜା ହେଇନାହିଁ। ବଂଧୁକ ଗୁଳି ଖାଇ ମଣିଷ ବଞ୍ଚି ଥିବାର ନଜିର ରହିଛି। କଣ୍ଟାଟିଏ ଗୋଡ଼ରେ ବାଜିବା କାରଣରୁ ମଣିଷ ମରି ଯିବାର ମଧ୍ୟ ପ୍ରମାଣ ରହିଛି। ଅନେକ ଧନଶାଳୀ ମଣିଷ ଦୁଃଖୀ ଅଛନ୍ତି। ଅସଂଖ୍ୟ ଦରିଦ୍ର ମଣିଷ ସୁଖ ଭୋଗ କରୁଛନ୍ତି। ଶକ୍ତିଶାଳୀ ବାଘର ବଂଶଲୋପ ପାଇଯାଏ, ପୁଣି ଛେଳି ପରି ଡରୁଆ ପ୍ରାଣୀର ସଂଖ୍ୟା ପୁଣି ବଢ଼ି ବଢ଼ିଯାଏ। ଏ' ସବୁ ହେଲା ପ୍ରଭୁଙ୍କର ଲୀଳା ।

- ହେଇପାରେ, ସୂର୍ଯ୍ୟ ତୋ'ପାଇଁ ଅଯୋଗ୍ୟ ଥିଲା। ତୋ'ଠାରୁ ଯେଉଁ ଦେବଶିଶୁ ଜନ୍ମ ନେବାର ଅଛି, ସେଥିପାଇଁ ଅନ୍ୟ କୌଣସି ଏକ ଦେବ ପୁରୁଷ ଅପେକ୍ଷା କରି ଥାଇପାରେ। ସମୟ ହେଉଛି, ବଡ଼ ବଳବାନ। ଆମକୁ ଧୈର୍ଯ୍ୟର ସହ ଅପେକ୍ଷା କରିବାକୁ ପଡ଼ିବ ।'

ନିରାକାର ବାବାଂକ କଥାଶୁଣି ଜ୍ୟୋତି ନୀରବ ରହି ଯାଇଥିଲା । ତା'ତୁଣ୍ଡରୁ ଆଉ ଭାଷା ବାହାରିଲା ନାହିଁ। ବାବାଂକଠାରୁ ବିଦାୟ ନେବା ଉଦ୍ଦେଶ୍ୟରେ ସେ ତରବର ହୋଇ ଭୂମିଷ୍ଠ ପ୍ରଣାମ ଜଣାଇଲା। ବାବା ଦୁଇ ହାତ ଟେକି - ଗୁରୁ ମହିମା ଅଲେଖ ଧ୍ୱନି ଦେଇ ତାକୁ ସର୍ବଂସହା, ଶକ୍ତିମୟୀ ହେବାକୁ ଆଶୀର୍ବାଦ କଲେ।

ଜ୍ୟୋତି ଫେରିବା ବାଟରେ କେତେ କ'ଣ ଭାବୁଥିଲା। ବାବାଙ୍କ କଥା ଅନୁସାରେ ତେବେ କ'ଣ ତା'ର ଦ୍ୱିତୀୟ ବିବାହ ହେଇପାରେ ? ନଚେତ୍ ସେ ଦେବଶିଶୁର ଜନନୀ ହେବ କିପରି ? ବାବାଂକ କଥା ତ ଅନ୍ୟଥା ହୋଇ ନପାରେ ।

ଘରେ ପହଞ୍ଚି ଜ୍ୟୋତି ବିଛଣାରେ ପଡ଼ିପଡ଼ି କେତେ କ'ଣ ଭାବି ଚାଲିଲା। ଭଗବାନଂକର୍ ଶରଣାପନ୍ନ ହେଇ କହିଲା, 'ହେ ପ୍ରଭୁ ମହିମା ଗୋସାଇଁ ! 'ମୁଁ ଜଣେ ଅସହାୟ, ନିର୍ବୋଧ ବାଳିକା। ମୋତେ ସଦ୍‌ବୁଦ୍ଧି ଦିଅନ୍ତୁ। ଆପଣଂକ ଇଛା ହିଁ ପୂରଣ ହେଉ।'






ହୀରା ଅପା ଆଜି ତାଂକ ଗାଁ'ରୁ ଆସି ମଠକୁ ଯିବାକୁ ଜ୍ୟୋତିକୁ କହିଲେ । ନିରାକାର ବାବା ଯିବା ଦିନରୁ ସେ ଆଉ ମଠକୁ ଯାଇନାହିଁ । ତଥାପି ଅନ୍ୟ ପରିଚିତ ବାବାମାନେ ଅଛନ୍ତି, ଟିକେ ଯାଇ ବୁଲି ଆସିଲେ, ମନଟା ପରିବର୍ତ୍ତନ ହୋଇଯିବ ।

ଦୁହେଁ ସିଧା ଯାଇ ମଠରେ ଦେଖନ୍ତି ତ, ମାନସ ବାବା ଏକମନ ଧ୍ୟାନରେ କ'ଣ ଗୋଟାଏ ପୋଥି ଲେଖି ଚାଲିଛନ୍ତି । ତାଂକ ଚାରିପଟେ ବିଭିନ୍ନ ପ୍ରକାର ପୁସ୍ତକ, ପତ୍ରିକା ଓ ଚିରୁକୁଟି କାଗଜ ଗଦା ହୋଇଛି ।

ହୀରା ଅପା ଓ ଜ୍ୟୋତି ଯାଇ ତାଂକୁ ଶରଣ ଜଣାଇଲେ ବି ସେ ତାଂକୁ ଚାହିଁଲେ ନାହିଁ, କିମ୍ବା ନିରାକାର ବାବା କି ମଧୁବାବାଂକ ପରି 'ମହିମା ଅଲେଖ'ଙ୍କୁ ସ୍ମରଣ କରି ଆଶୀର୍ବାଦ କଲେନାହିଁ ।

ଜ୍ୟୋତି ବୁଝିଗଲା, ବାବା କଣକ ଅତ୍ୟନ୍ତ ଅନ୍ୟ ମନସ୍କ ଭାବରେ ପୁସ୍ତକ ରଚନାରେ ବ୍ୟସ୍ତ, କିମ୍ବା ସେ ନାରୀଂକ ମୁଖ ଦର୍ଶନ କରିବେ ନାହିଁ ବୋଲି ବୋଧହୁଏ, ଦୃଢ଼ ପ୍ରତିଜ୍ଞ ହୋଇଛନ୍ତି ।

ପୂର୍ବ ଅଭ୍ୟାସ ଅନୁସାରେ ଜ୍ୟୋତି ଓ ହୀରା ଅପା ମଠର ଛୋଟ ବଡ଼ କାମ କରି ପକାଇଲେ । ଗାଦି ମନ୍ଦିର, ଅଖଣ୍ଡବତୀ ମନ୍ଦିର, ଶୂନ୍ୟ ମନ୍ଦିର, ଜ୍ୟୋତି ମନ୍ଦିର ଓ ଘଣ୍ଟା ଘର ଦର୍ଶନ ସାରି, ଶେଷରେ ପୁଣି ମଠରେ ଆସି ପହଞ୍ଚି ଦେଖିଲେ; ମାନସ ବାବା ଭିକ୍ଷା ପାଇଁ ପ୍ରସ୍ତୁତ ହେଉଛନ୍ତି । ସେ ହୀରା ଅପା ଓ ଜ୍ୟୋତିଙ୍କୁ ଦେଖି ଭିକ୍ଷା ପାଇଁ ନିମନ୍ତ୍ରଣ କଲେ ।

- ଅଳ୍ପ କଥା, ଅଳ୍ପ ଦେଖା ଏବଂ ଅଳ୍ପ ମିଶାରେ ଜ୍ୟୋତି କେମିତି କେମିତି ଅନୁଭବ କଲା ।

ସେ ସୂର୍ଯ୍ୟକାନ୍ତଙ୍କୁ ଯେଉଁଦିନ ପ୍ରଥମ କରି ଦେଖିଥିଲା, ଠିକ୍ ଏଇ ମାନସ ବାବାଂକ ପରି ସେ ଦିଶୁଥିଲେ। ତାଂକରି ନାକ ପରି ଠିଆ ନାକ, ତାଂକରି କଣ୍ଠସ୍ୱର ପରି ଗମ୍ଭୀର।

ଇଏ କ'ଣ ସେହି ସୂର୍ଯ୍ୟକାନ୍ତ ? ମିଛରେ କୁଆଡ଼େ ଚାଲି ଯାଇଥିଲେ। ବର୍ଷକ ପରେ ସନ୍ନ୍ୟାସୀ ହେଇ ମୋ ଆଗରେ ଅଭିନୟ କରୁଛନ୍ତି ନା'କଣ ? ଯଦି ଏ'କଥା ସତ୍ୟ ହେଇଥାଏ, ତେବେ ନିରାକାର ବାବାଂକ କଥା ଅନୁସାରେ ଉସୁନା ଧାନ ହିଁ ଗଜା ହେଇ ପାରିଛି।

- କେତେଦିନ ସେ ଅଭିନୟ କରି ମୋତେ ଠକିବେ ?

- 'ହେ ପ୍ରଭୁ ! ମହିମା ଗୋସେଇଁ, ମୋ ପ୍ରାଣର ଦେବତା ସୂର୍ଯ୍ୟଙ୍କୁ ଆପଣ ଏଇଠି ଲୁଚେଇ ରଖିଛନ୍ତି ! କେବଳ ମୋତେ ପରୀକ୍ଷା କରିବା ପାଇଁ। ଠିକ୍ ଅଛି, ତୁମରି ମାୟାର ତ ଅନ୍ତନାହିଁ। ଆଉ ବେଶି ନୁହେଁ। ମୋ ସୂର୍ଯ୍ୟକାନ୍ତଙ୍କୁ ମୋତେ ଶୀଘ୍ର ଫେରାଇ ଦିଅ। ମୋ ମଥାର କଳଙ୍କ ଲିଭେଇ ଦିଅ ପ୍ରଭୁ। ତାଂକ ମନକୁ ବଦଳେଇ ଦିଅ। ସେ ତାଂକର ସୁଖର ସଂସାରକୁ ଫେରି ଆସନ୍ତୁ'।

ଭିକ୍ଷା ପତ୍ର ଉପରେ ଅନ୍ନ ବଢ଼ା ସରିଲାଣି। ଜ୍ୟୋତିକୁ ସେସବୁ କିଛି ଜଣା ପଡୁନାହିଁ। ଆଖି ବନ୍ଦ କରି ସେ ସତେ ଯେମିତି ଧ୍ୟାନରେ ବସି ଯାଇଥିଲା। ହୀରା ଅପା ତାକୁ ହଲେଇ ଦେବାରୁ ତା'ର ଧ୍ୟାନ ଭଂଗ ହେଲା।

ଜ୍ୟୋତି ଆଉ ଆଖି ଉଠେଇ କାହାରିକୁ ଚାହିଁ ପାରିଲା ନାହିଁ। ପତ୍ରରେ ଯାହା ଅନ୍ନ ଥିଲା, ସେତେକ ପାଟିରେ ପୂରେଇ ଦେଇ ତରବର ହେଇ ଉଠି ଆସିଲା।

ବାଟରେ ସେ ହୀରା ଅପାକୁ ସବୁ କଥା କହି ଆଶ୍ଚର୍ଯ୍ୟ କରି ଦେବାକୁ ସ୍ଥିର କରିଥିଲା; କିନ୍ତୁ କହି ପାରି ନଥିଲା। ମନଟା ତା'ର ଘାଣ୍ଟି ଚକଟି ହେଲା। ମନକୁ ମନ ପ୍ରଶ୍ନ ପଚାରି ଚାଲିଲା, ଅପାକୁ କେମିତି କହିବି, କ'ଣ କହିବି ? ମାନସ ବାବା ଯେ ସୂର୍ଯ୍ୟକାନ୍ତ, ଏ' କଥାର ପ୍ରମାଣ କ'ଣ, କେମିତି ଦେବି ? ତାଂକ ସହିତ ମିଶିବାକୁ କି କଥା ହେବାକୁ ତ ସୁଯୋଗ କିମ୍ବା ସମୟ ପାଇ ନଥିଲି ? ଭଗବାନ ମୋତେ ମାୟା ଜାଲରେ ପକାଇ କାହିଁକି ଛଟପଟ କରୁଛନ୍ତି ??'

ଘରେ ପହଞ୍ଚି ଜ୍ୟୋତି ବିଛଣାରେ ପଡ଼ି ଆକାଶ-ପାତାଳ ଭାବି ହେଲା। ମନେ ମନେ ସ୍ଥିର କଲା, କାଲି ବଡ଼ି ସକାଳୁ ସେ ଏକୁଟିଆ ମଠକୁ ଯିବ। ମାନସ ବାବା ରୂପୀ ସୂର୍ଯ୍ୟକାନ୍ତ ସହିତ ସିଧା ସଳଖ କଥା ହେବ। ତାଂକୁ ପଚାରିବ - ତମେ କାହିଁକି

ଏମିତି କପଟ ଅଭିନୟ କରୁଛ ? ମୋତେ, ମୋର ବାପା ବୋଉ ଆଉ ତମର ଦୁଃଖିନୀ ବୋଉ, ପିଉସୀ ବୁଢ଼ୀକୁ ଏତେଦଣ୍ଡ ଦେଇ କି' ଲାଭ ପାଉଛ ?? ଯଦି ତମର ବାହା ହେବାର ନଥିଲା, ତେବେ ମୋ ଜୀବନ ସହିତ ଖେଳିଲ କାହିଁକି ?

- ଯଦି ତମେ ସନ୍ନ୍ୟାସୀ ହେଇ ସବୁଦିନ ମଠରେ ରହିବ, ମୋତେ ସନ୍ନ୍ୟାସିନୀ କରି ତମରି ସେବାରେ ଲଗାଇ ରଖ' ।

- ରାତିରେ ଆଉ ଜ୍ୟୋତିକୁ ନିଦ ହେଇନାହିଁ । ରାତି ସାରା ସେ ଅପେକ୍ଷା କରିଛି, କେତେବେଳେ ଆକାଶରେ ସିନ୍ଦୂରା ଫାଟିବ, ସେ ସ୍ନାନ-ଶୌଚ ସାରି ମଠକୁ ଯିବ ।

ମାନସ ବାବା ପ୍ରଭାତ ଶରଣ ଶେଷ କରି ମଠ ଭିତରକୁ ପଶିଲା ବେଳକୁ ଏକୁଟିଆ ଜ୍ୟୋତି ଭିତରେ ଥିଲା । ହଠାତ୍ ଜ୍ୟୋତି ତାଂକୁ ଯାବୁଡ଼ି ଧରି କହିଲା -'ତମେ ମୋର ସୂର୍ଯ୍ୟକାନ୍ତ । ତମେ ମୋର ଇହକାଳ ପରକାଳର ଦେବତା । ମୋ ମଥାର କଳଙ୍କ ଲିଭେଇ, ସିନ୍ଦୂର ଭରିଦିଅ' ।

ବାବା ହଠାତ୍ ଏଭଳି ପରିସ୍ଥିତିରେ କେବେ ପଡ଼ିଯିବେ, ଆଗରୁ କଳ୍ପନା କରି ନଥିଲେ । ସେ ଜ୍ୟୋତି ବିଷୟରେ ଅନେକ କଥା ଶୁଣିଛନ୍ତି । ତାଂକର ଦେହ ଥରି ଉଠିଲା । ସୁନ୍ଦରୀ ପୁଣି ଯୁବାନାରୀକୁ ସ୍ପର୍ଶମାତ୍ରେ ହିଁ ସେ ଶକ୍ତିହୀନ ହେଇ ପଡ଼ିଲେ । ଅଜାଣତରେ ଜ୍ୟୋତି ପିଠିରେ ସେ ହାତ ବୁଲେଇ ଆଣିଲେ । ଆଉ କିଛି କଥା କହିବାକୁ ତାଂକର ସାହସ ନଥିଲା । ଜ୍ୟୋତିର ବାହୁବନ୍ଧନ ଭିତରେ ସେ କିଛି କ୍ଷଣ ସ୍ଥିର ହୋଇ ରହି ଯାଇଥିଲେ ।

ସେଦିନ ଦୁହେଁ ଦୁହିଁଙ୍କୁ ଆଉ ବେଶି କିଛି କଥା କହି ନଥିଲେ । ବାହୁ ବନ୍ଧନ ହୁଗୁଳା ହେଇଗଲା ପରେ ଜ୍ୟୋତି ଲାଜରେ ଝାଁଉଳି ପଡ଼ିଥିଲା । ମୁହଁ ତଳକୁ କରି ଏକମୁହାଁ ହେଇ ସେ ଘରକୁ ଦୌଡ଼ିଲା ।

ସେହି ମୁହୂର୍ତ୍ତରୁ ମାନସ ବାବାଂକ ମନ ବିଚଳିତ ହେବାରେ ଲାଗିଲା । ସେ ଏଭଳି ଅନୁଭୂତି ପ୍ରଥମ ଥର ପାଇଁ ଲାଭ କଲେ । ତାଂକ ମନ ଭିତରେ ଥିବା ସୁପ୍ତ କାମନା ଜାଗ୍ରତ ହେଇ ଉଠିଲା ।

ସେ ଅନୁଭବ କଲେ, ତାଂକ ହୃଦୟ କନ୍ଦରରେ ଭୟଙ୍କର ନାଗ ସାପଟାଏ ପଶି ଜିଭ ଲହ ଲହ କରୁଛି । ମଝିରେ ମଝିରେ ଫଣା ଟେକି ଚୋଟ ପରେ ଚୋଟ ଦେଇ ଚାଲିଛି । ବିଷ ଜ୍ୱାଳାରେ ମାନସ ବାବା ଛଟ ପଟ ହେବାକୁ ଲାଗିଲେ । ତାଂକର ଶ୍ୱାସ ପ୍ରଶ୍ୱାସର ଗତି

ବେଳକୁ ବେଳ ବଢ଼ି ଚାଲିଲା । ସେ ଦିନ ବେଳାର ଭିକ୍ଷା ବି କରି ପାରିଲେ ନାହିଁ ।

ମଠର ପ୍ରତ୍ୟେକ ପଦାର୍ଥ ତାଂକୁ କେବଳ ଜ୍ୟୋତିମୟ ଦିଶିଲା । ମୁହୂର୍ତ୍ତକ ମଧ୍ୟରେ ତାଂକର ଏମିତି କ'ଣ ହେଇଗଲା ଯେ, ଦୀର୍ଘ ଦିନର ତ୍ୟାଗ, ପ୍ରାର୍ଥନା ଓ ଶରଣ ସବୁ କିଛି ପାଣି ଫୋଟକା ପରି ମିଳେଇଗଲା । ନିଜକୁ ପ୍ରଶ୍ନ ପଚାରି ପଚାରି ଥକି ପଡ଼ିଲେ, କିନ୍ତୁ କୌଣସି ଉତ୍ତର ଖୋଜି ପାଇଲେ ନାହିଁ ।

ବରଂ ଗୋଟାଏ ପରେ ଗୋଟାଏ ପୁରାଣର କାହାଣୀ ତାଂକର ମନେ ପଡ଼ିଗଲା । ମହାଯୋଗୀ ମହାଦେବଂକୁ ତପସ୍ୟା ବଳରେ ପାର୍ବତୀ ବର ରୂପେ ପାଇଥିଲେ । ତାଂକରି ଔରସରୁ ଦେବସେନାପତି ବୀର କାର୍ତ୍ତିକେୟ ଜନ୍ମଲାଭ କରିଥିଲେ ।

- ମହର୍ଷି ବ୍ୟାସଦେବ ମହା ତପସ୍ୱୀ ଥିଲେ, ମାତାଂକ ଆଦେଶରେ ସେ ଭ୍ରାତୃବଧୂଙ୍କ ଗର୍ଭରୁ ସନ୍ତାନ ଉତ୍ପନ୍ନ କରି ପାରିଲେ ।

ସୂର୍ଯ୍ୟ ଦେବତା ବି କୁମାରୀ କୁନ୍ତୀର ବଶତା ସ୍ୱୀକାର କରି ନେଲେ ।

- ମୁଁ ତ ସାମାନ୍ୟ ମଣିଷଟିଏ ମାତ୍ର । ଜ୍ୟୋତି ତା'ର ଧର୍ମବଳରେ ମୋତେ ବଶ କରି ଦେଇ ପାରିଛି । ଭୁଲ କେଉଁଠି ରହିଲା ?

- ଜ୍ୟୋତି ମୋର ପୂର୍ବଜନ୍ମର ଅର୍ଦ୍ଧାଙ୍ଗିନୀ । ସେ ମୋର ମୁକ୍ତିଦାତ୍ରୀ । ମୁଁ ତା'ର ମନୋକାମନା ନିଶ୍ଚୟ ପୂରଣ କରିବି ।

ମଠର ଦୁଆର ବନ୍ଦ କରି ମାନସ ବାବା ସାରା ଦିନ ଚିନ୍ତାରେ ବୁଡ଼ି ରହିଲେ । ସଂଧ୍ୟାର ସାଷ୍ଟାଙ୍ଗ ଶରଣ ମଧ୍ୟ ଭୁଲିଗଲେ ।

ସାରା ରାତି ଜ୍ୟୋତି ଅନିଦ୍ରା ରହିଛି । ସେ ବୁଝି ନେଇଛି, ସୂର୍ଯ୍ୟକାନ୍ତ ହିଁ ମାନସ ବାବା ରୂପରେ ତାକୁ କୋଳେଇ ନେଇଛନ୍ତି । ତାଂକର ମନ ନିଶ୍ଚୟ ପରିବର୍ତ୍ତନ ହେବ । ତାଙ୍କରି ସନ୍ତାନ ହିଁ ମୋ କୋଳରେ ଦେବଶିଶୁ ଭାବରେ ଜନ୍ମ ଗ୍ରହଣ କରି ତାଂକର ବଂଶରକ୍ଷା କରିବ ।

ତା'ପରଦିନ ବଡ଼ି ସକାଳୁ ଜ୍ୟୋତି ମଠରେ ଆସି ପହଞ୍ଚି ଦେଖିଲା, ମାନସ ବାବା, ତାକୁ ହିଁ ପ୍ରତୀକ୍ଷା କରି ରହିଛନ୍ତି । ଦୁହେଁ ଦୁହିଁଙ୍କୁ ପାଇ ଅଧୀର ହେଇ ପଡ଼ିଲେ ।

  

ମାନସ ବାବା ଭୟ ଓ ଆତଙ୍କରେ ଥରିବାକୁ ଲାଗିଲେ । ଏଭଳି ଭୁଲ ସେ କେମିତି କରିବାକୁ ସାହସ କଲେ ? ନିଜକୁ ପଚାରି ଚାଲିଲେ ।

- 'ନିରାକାର ବାବା କହି ଯାଇଥିଲେ, 'ନାରୀ ମୁଖ ଦର୍ଶନ ଓ ନାରୀ ଅଂଗ ସ୍ପର୍ଶ, ତାଂକ ପାଇଁ କଠୋର ଭାବରେ ନିଷେଧ। ମୁଁ ଆଜି ଏଭଳି ପାପକାର୍ଯ୍ୟ କେମିତି କରି ପାରିଲି ? ମୋର ବାରବର୍ଷର ତପସ୍ୟା ଆଜି ଶୁଖୁଆ ଝୋଳରେ ବୃଥା ହୋଇଗଲା। ଏଥିରୁ ମୁକ୍ତି ପାଇବି କେମିତି ?

- ନାରୀ ତ ଯୁଗେ ଯୁଗେ କୁହୁକୁନୀ। ଜ୍ୟୋତି ହିଁ ମୋତେ ନର୍କଗାମୀ କରିଦେଲା। ମୋ ଶରୀରକୁ ମାରା କରିନେଲା। ନିରାକାର ବାବା ମୋ ଉପରେ ଯେଉଁ ଆସ୍ଥା ଓ ବିଶ୍ୱାସ ରଖିଥିଲେ, ମୁଁ ସେଥିରେ ବିଷ ଢାଳି ଦେଲି। ମୋତେ ସେ କଣ କ୍ଷମା କରି ପାରିବେ?

- ବର୍ତ୍ତମାନ ଯାହା ହେଇଛି, ହେଇଛି। ବାବାଂକ ଆଗରେ ସବୁ ସତକଥା, ପାପକଥାକୁ ଖୋଲି କହିଦେବି ପଛେ, ଆଉ ଦ୍ୱିତୀୟ ବାର ଏପରି ଭୁଲ କଦାପି କରିବି ନାହିଁ।'

ତାଂକ ବାହୁ ବନ୍ଧନ ହୁଗୁଳା ହେଇ ଆସୁଥିଲା। ଜ୍ୟୋତି ଅନେକ ଦିନର ତପସ୍ୟାର ଫଳ ଆଜି ହାତ ମୁଠାରେ ପାଇ ଥିବାରୁ ବାବାଂକ ବାହୁ ବନ୍ଧନରୁ ଫିଟି ଯିବାକୁ ଚାହୁଁ ନଥାଏ।

ବାବା କହିଲେ, 'ଜ୍ୟୋତି ! ଆମର ଏ' ମିଳନ ଘଟଣା ନିରାକାର ବାବା ଫେରିବା ପର୍ଯ୍ୟନ୍ତ ଗୁପ୍ତ ରଖିବ।

- ମୋ ରାଣ !

ସେ ମୋତେ ଦଣ୍ଡ ଦେଇ ସାରିଲେ, ତମେ ଯାଇ ମୋତେ ଦେଖା କରିବ। ସେତେଦିନ ଯାଏ, ତମେ ଏ'ମଠକୁ ଆସିବ ନାହିଁ। ଏତିକି ମୋର ନିବେଦନ। ଏହା ମୋର ଆଦେଶ ।'

ବାବାଂକ ଆଦେଶକୁ ଶିରୋଧାର୍ଯ୍ୟ କରି ଜ୍ୟୋତି ସେହି ଦିନରୁ ଆଉ ମଠକୁ ଯାଇନାହିଁ। ନିଜ ଠାକୁର ଘରେ ନିତି ମୁଣ୍ଡ ବାଡ଼େଇ ପ୍ରଭୁଙ୍କୁ ଜଣାଏ - 'ମୋ ସୂର୍ଯ୍ୟକାନ୍ତକୁ ମୋତେ ଦେଇଦିଅ। ଶୀଘ୍ର ନିରାକାର ବାବା ଫେରି ଆସନ୍ତୁ। ମୁଁ ଯାଇ ତାଂକ ସହିତ ଭେଟି ସବୁ କଥା ବୁଝେଇ ଦେବି, 'ତମର ଦେବଶିଶୁ ମୋ ଗର୍ଭରେ ବଢ଼ି ଚାଲିଛି। ଏ'ଶୁଭ ସମ୍ବାଦ ବି ତାଂକୁ ଦେଇଦେବି' ।



# ଷୋହଳି

ଚାରି, ଛଅ ମାସ ହେଲା, ଜ୍ୟୋତି ଆଉ ମଠକୁ ଯାଇନାହିଁ । ଅଧିକାଂଶ ସମୟ ସେ ଘର ଭିତରେ ଠାକୁର ପୂଜାରେ ବ୍ୟସ୍ତ ରହୁଛି । ହୀରା ଅପା ଆସିଥିଲେ, ଯେତେ କହିଲେ ବି ସେ ମୋଟେ ମଠକୁ ଗଲାନାହିଁ ।

ସନାତନ ଝିଅର କଥା ଆଉ କାମରେ ମୋଟେ ହସ୍ତକ୍ଷେପ କରନ୍ତି ନାହିଁ ।

କେତେଦିନ ତଳେ ଜ୍ୟୋତି ତା'ମାଆକୁ କହିଥିଲା, 'ବୋଉ! ଦେବଦୂତ ମୋ କୋଳକୁ ନିଶ୍ଚୟ ଆସିବ । ନିରାକାର ବାବା ଗଲା ବେଳକୁ ଏକଥା କହି ଯାଇଛନ୍ତି । ତାଂକ କଥା କ'ଣ କେବେ ଅନ୍ୟଥା ହୁଏ' ?

ଜ୍ୟୋତି ବୋଉ ତା' କଥାକୁ ସେଦିନ ଗୁରୁତ୍ୱ ଦେଇ ନଥିଲେ । ସେହି ଭୟଙ୍କର ଦୁର୍ଘଟଣା ଦିନଠାରୁ ସିଏ ବି ଜ୍ୟୋତିକୁ କିଛି କହନ୍ତି ନାହିଁ । କିନ୍ତୁ ସେ ଲକ୍ଷ୍ୟ କରୁଛନ୍ତି, ଜ୍ୟୋତିର ଶରୀର, ରୂପ ଓ ରଂଗ ସବୁ ଧୀରେ ଧୀରେ ବଦଳିବାରେ ଲାଗିଛି । ସେ ଦିନେ ମୁହଁ ଖୋଲି ପଚାରି ଦେଲେ, 'କିଲୋ ଜ୍ୟୋତି ! ତୁ ଆଉ ମାସିକ ଗାଧୁଆ ଗାଧୋଇ ନାହୁଁ କି ?

ଜ୍ୟୋତି ଖୋଲା ମନରେ କହିଦେଲା, 'ବୋଉ ! ସୂର୍ଯ୍ୟକାନ୍ତର ସନ୍ତାନ, ସିଏ ଦେବଶିଶୁ ହେଇ ଜନ୍ମ ନେବ । ସିଏ ପରା ଏବେ ମୋ ଗର୍ଭରେ ବଢ଼ି ଚାଲିଛି' ।

ତା'କଥାକୁ ବୋଉ ହସି ଉଡ଼େଇ ଦେଇ କହିଥିଲେ, 'ବାଇଆଣୀଟା ! ସୂର୍ଯ୍ୟକାନ୍ତ ତ ବର୍ଷେ ହେଲା ଚାଲି ଗଲାଣି । ତା'କଥାକୁ ତତେ ଭୁଲି ଯିବାକୁ କହିଥିଲି ପରା ।

- ତୁ ଯଦି ମନକୁ ଟାଣ କରି ଥରେ କହିଦେବୁ, ମୁଁ ତତେ ଆଉ କେଉଁଠି ଦ୍ଵିତୀୟ ବିବାହ କରେଇ ଦେବି । ତେବେ ଯାଇ ତୋର ଦେବଶିଶୁ କନ୍ମ ହେଇ ପାରିବ' ।

ଏ'ତୁଣ୍ଡରୁ ସେ ତୁଣ୍ଡ ହେଇ କଥାଟା ବାଟରେ ପଡ଼ି ହାଟରେ ଗଡ଼ିଲା ।

'ଜ୍ୟୋତିର ପିଲା ହେବ' । ଏ'କଥାଟାକୁ ଯିଏ ଶୁଣିଲା, ସିଏ ନିଜ କାନକୁ ବିଶ୍ଵାସ କରି ପାରିଲା ନାହିଁ । 'ଜ୍ୟୋତି ଭଳି ଝିଅ ନାଆଁରେ ପୁଣି ବଦନାମ !

ବର୍ଷେ ତଳେ ଯିଏ ବିଧବା ହେଇ ସାରିଛି, ତା'ର ପୁଣି ପିଲା ହେବ କେମିତି? ସିଏ ତ ଏଣୁ ତେଣୁ ଘରର ଝିଅ କି ବୋହୂ ନୁହେଁ । ତା'ପରେ ସେ ବି କାହାରି ଘରକୁ ଯାଏନା, କିମ୍ବା ତାଙ୍କ ଘରକୁ କେହି ଯିବା ଆସିବା କରନ୍ତି ନାହିଁ । ସବୁବେଳେ ସେହି ଠାକୁର ଘରେ ବସି ପୂଜା-ଧ୍ୟାନରେ ବସିଥିବ । ତା' ନାଆଁରେ ବଦନାମୀ କରିବାକୁ ସାହସ କରିବ କିଏ' ?

ତଥାପି କଥାଟା ଅଛପା ରହିଲା ନାହିଁ । ଯିଏ ଜ୍ୟୋତିକୁ ଦେଖିଲା, ସିଏ କହିଲା- 'ଜ୍ୟୋତିର ନିଶ୍ଚୟ ପିଲା ହେବ । ତା'ର ଛଅ ମାସ ପୂରି ଗଲାଣି' ।

ସନାତନଂକ କାନରେ ବି ଏ'କଥାଟା ପଡ଼ିଲା । ସେ ଆସି ଜ୍ୟୋତି ବୋଉକୁ ଚୁପ୍ ଚୁପ୍ ପଚ଼ାରିଲେ । 'ସତ କଥାଟା କ'ଣ' ?

ଜ୍ୟୋତି ବୋଉ କହିଲେ, 'ଜ୍ୟୋତି ମାଆ ହେବାକୁ ଯାଉଛି, ଏ'କଥା ତ ସତ; କିନ୍ତୁ ସେ କହୁଛି ଯେ, ସୂର୍ଯ୍ୟକାନ୍ତ ସହିତ ତା'ର ମିଳନ ହେଉଛି । ଏବେ ବି ସୂର୍ଯ୍ୟକାନ୍ତ ଜୀବିତ ରହିଛି । ଅଳ୍ପଦିନ ପରେ ସୂର୍ଯ୍ୟକାନ୍ତ ନିଜେ ଆସି ଆମ ଘରେ ତାଙ୍କ ପରିଚ଼ୟ ଦେବେ ।

ଜ୍ୟୋତି ବୋଉ କଥା ଶୁଣି ସନାତନଙ୍କର ମୁଣ୍ଡ ଗୋଳମାଳ ହେଇଗଲା । ସେ ଭାବି ଚ଼ାଲିଲେ, 'ଏଇ କି' କଥା ? ନିଜ ଆଖିରେ ମୁଁ ସୂର୍ଯ୍ୟକାନ୍ତର ଶବକୁ ଦେଖି ଆସିଛି । ସେ ପୁଣି ଜୀବିତ ହେଲା କେମିତି ? ଜ୍ୟୋତି ସହିତ ତା'ର ଭେଟ ହେଲା କେମିତି' ?

ଏ'କଥାର ରହସ୍ୟ ସନାତନ ମୋଟେ ବୁଝି ପାରିଲେ ନାହିଁ । ଏଣେ ସେ କୌଣସି ପ୍ରକାରେ ଜ୍ୟୋତିକୁ ଅବିଶ୍ଵାସ ବି କରି ପାରିଲେ ନାହିଁ ।

ଝିଅର କଥା ଅନୁସାରେ ସୂର୍ଯ୍ୟର ପରିଚ଼ୟ ପାଇଁ ବାପା-ବୋଉ ଅପେକ୍ଷା

କରି ରହିଲେ । ଯିଏ ଯେତେ ପ୍ରକାର କହିଲେ ବି ସନାତନ ପଥର ପରି ସବୁ ସହିଗଲେ । ସନାତନ ଜ୍ୟୋତି ବୋଉକୁ ମଧ୍ୟ ଧୈର୍ଯ୍ୟ ଧରି ଅପେକ୍ଷା କରିବାକୁ ପରାମର୍ଶ ଦେଲେ ।

ହଠାତ୍ ଦିନେ ସଂଜବେଳେ ଜ୍ୟୋତିର ଗର୍ଭ ଯନ୍ତ୍ରଣା ହେଲା । ସନାତନ ପାଗଳ ଭଳି ହେଇ ଏଣେ ତେଣେ ଦୌଡ଼ିଲେ । ମୁଖ ଲଜ୍ଜାରେ କାହାରିକୁ ସାହାଯ୍ୟ ମାଗି ପାରିଲେ ନାହିଁ । ବିକଳ ହେଇ ମହିମା ଗୋସାଇଁଙ୍କ ଶରଣ ପଶିବାକୁ ମଠକୁ ଧାଇଁଲେ ।

ଜ୍ୟୋତି ବୋଉ କବାଟ କିଳି ମୁଣ୍ଡ ପିଟି କାନ୍ଦିବାରେ ଲାଗି ପଡ଼ିଲେ । କୁଆଁ କୁଆଁ ରାବ ଦେଇ ଦେବଶିଶୁ ଜନ୍ମଲାଭ କଲା । ସାହି-ପଡ଼ିଶାର ଲୋକେ ଉଠି ଆସିଲେ ।

ଜ୍ୟୋତି ବୋଉର କୌଣସି କଥାକୁ କେହି ବିଶ୍ୱାସ କଲେନାହିଁ । ଯେଉଁମାନେ ଜ୍ୟୋତିକୁ ସ୍ନେହ-ଆଦର କରୁଥିଲେ, ଯେଉଁମାନେ ଜ୍ୟୋତିର ଶିକ୍ଷା, ଦୀକ୍ଷା, କାର୍ଯ୍ୟ କଳାପକୁ ପ୍ରଶଂସା କରୁଥିଲେ । ସେମାନେ ସମସ୍ତେ ହଠାତ୍ ବଦଳିଗଲେ । ମନଗଢ଼ା କାହାଣୀ କହି ଜ୍ୟୋତିକୁ କିଏ କେତେ ପ୍ରକାର ବଦନାମୀ କଲେ, ତା'ର ହିସାବ ରହିଲା ନାହିଁ ।

ତା' ପରଦିନ ଗାଁ'ର ବୟସ୍କ ଲୋକମାନେ ମିଶି ପଞ୍ଚାୟତ ଡାକିଲେ । ଜ୍ୟୋତିର ଅସଲ ସ୍ୱାମୀ କିଏ ବୋଲି ସନାତନଂକୁ ପଚ଼ରା ଗଲା । ଜ୍ୟୋତି ଘର ଭିତରେ ଥାଇ ବୋଉ ହାତରେ ଖବର ଦେଇ ପଠାଇଲା, 'ପଞ୍ଚାୟତରେ କହିଦିଅ, ମଠରେ ରହୁଥିବା ମାନସ ବାବା ହିଁ ଅସଲ ସୂର୍ଯ୍ୟକାନ୍ତ । ତାଂକରି ଔରସରୁ ମୋର ସନ୍ତାନ ଜନ୍ମ ନେଇଛି' ।

ଏ'କଥାର ସତ୍ୟତା ପ୍ରମାଣିତ କରିବାକୁ ଗାଁ' ଲୋକେ ମଠକୁ ଧାଇଁଲେ ।

ଜ୍ୟୋତିର ପୁଅ ଜନ୍ମ ହେବା ଖବର ଶୁଣିପାରି ମାନସ ବାବା ଅନୁମାନ କରି ନେଇଥିଲେ, ଯେ କୌଣସି ମୁହୂର୍ତ୍ତରେ କିଛି ଗୋଟାଏ ଅଘଟଣ ଘଟି ଯାଇପାରେ । ତେଣୁ ସେ ଯଥାଶୀଘ୍ର ସମ୍ଭବ ମଠଛାଡ଼ି କୁଆଡ଼େ ଅନ୍ତର୍ଦ୍ଧାନ ହେଇ ଯାଇଥିଲେ ।

ଜ୍ୟୋତିର କଥା ସତ୍ୟ ପ୍ରମାଣିତ ହେଇ ପାରିଲା ନାହିଁ, ବରଂ ଅଧିକରୁ ଅଧିକ ଥଟ୍ଟା ପରିହାସ ଆଉ ଅପବାଦ ଶୁଣିବାକୁ ମିଳିଲା ।

ଶେଷରେ ପଞ୍ଚାୟତରେ ନିଷ୍ପତ୍ତି ନିଆଗଲା, ଅପକର୍ମ ପାଇଁ ଜ୍ୟୋତି ସହିତ ତା'ର ବାପା ବୋଉ କାଲି ରାତି ସୁଦ୍ଧା ଗାଁ' ଛାଡ଼ି ଚ଼ାଲିଯିବେ । ଯଦି ସେମାନେ ନଯାଆନ୍ତି,

ତେବେ ସମସ୍ତଙ୍କୁ ଘରେ ପୂରାଇ ନିଆଁ ଲଗାଇ ଦିଆଯିବ। ତାଂକର ସମସ୍ତ ସଂପତ୍ତି ଆଜିଠାରୁ ଗ୍ରାମ କୋଠ ସମ୍ପତ୍ତିରେ ପରିଣତ ହୋଇଗଲା ।

ତୁଣ୍ଡ ବାଇଦ ସହସ୍ର କୋଶ।

ଜ୍ୟୋତିର ଗର୍ଭରୁ ଏକ ଅବୈଧ ସନ୍ତାନ ଜନ୍ମ ନେଇଛି, ଏ'ଖବର ଯାଇ ବିକ୍ରମପୁରରେ ପହଞ୍ଚି ଯାଇଥିଲା। ଗ୍ରାମ ପଞ୍ଚାୟତର ନିଷ୍ପତ୍ତି ମଧ୍ୟ ଜ୍ୟୋତିର ଶାଶୂ ଓ ପିଉସୀ ଶାଶୂ ଶୁଣି ସାରିଥିଲେ। ହାଏ ହାଏ କରି ସେମାନେ ମୁଣ୍ଡକୋଡ଼ି କାନ୍ଦିଲେ।

ସେଦିନ ରାତିରେ ଜ୍ୟୋତିର ଶାଶୂ ଶୋଇ ପାରି ନଥିଲେ। ବୋହୂଟା କେତେବଡ଼ କଳଙ୍କ ଲଗାଇ ଦେଲା, ତାଂକ କୁଳରେ ? କୁଳବୋହୂ ହୋଇ ପର ପୁରୁଷ ସାଂଗରେ, ଛି-ଛି-ଛି ।

- କିନ୍ତୁ ଏମିତି ହେଲା କେମିତି ? ଏଥିପାଇଁ ଦାୟୀ କିଏ ? ଏଭଳି ପରିସ୍ଥିତିରେ ନାରୀଟିର ମାନସିକତାକୁ ବୁଝିବ କିଏ ? ଆମେ ବର୍ତ୍ତମାନ କ'ଣ କରିବା ଉଚିତ୍। ଜ୍ୟୋତିପାଇଁ ତା' ବାପା ବୋଉ ଆଉ ଦାଣ୍ଡରେ ମୁଣ୍ଡଟେକି ବଞ୍ଚି ରହି ପାରିବେ ତ ? ସେମାନେ ଯଦି ଗାଁ'ରୁ ଘର ଛାଡ଼ି ବାହାରି ଆସନ୍ତି। ଦାଣ୍ଡର ଭିକାରି ହେଇଯିବେ ନାହିଁ ତ ?

- ଜ୍ୟୋତି ଛୁଆଟିକୁ ଧରି ଭିକାରୁଣୀ ହେଇ ବୁଲିଲେ, ଆମର ନାଆଁ ପଡ଼ିବ ନାହିଁକି ? ସରବରା କାରଂକ ବୋହୂ ... । ଓଃ !

ଅସଂଖ୍ୟ ପ୍ରଶ୍ନ, ଅନେକ ସମସ୍ୟା ଆସି ଜ୍ୟୋତିର ଶାଶୂକୁ ଦଂଶନ କରି ଚାଲିଲେ। ଠିକ୍ ପାହାନ୍ତିଆ ବେଳକୁ ସେ ସ୍ଥିର କଲେ, 'ଯାହା ହେଲେ ବି ଜ୍ୟୋତି ହେଉଛି, ଆମର କୁଳବୋହୂ। ତାକୁ ଇଜ୍ଜତ ଦେଇ ବଂଶର ମର୍ଯ୍ୟାଦାକୁ ରକ୍ଷା କରିବା ହେଉଛି, ମୋର ପ୍ରଥମ କର୍ତ୍ତବ୍ୟ' ।

ଭୋଳାନାଥ ଶିବ ନିଜେ ବିଷପାନ କରି ସଂସାରକୁ ରକ୍ଷା କଲେ ବୋଲି ସିନା ମହାଦେବ ହେଇ ପାରିଲେ। କହିବା ଲୋକଠାରୁ ସହିବା ଲୋକ ହିଁ ଶ୍ରେଷ୍ଠ। ଆମ ପୁରାଣ ଶାସ୍ତ୍ରରେ ଅନେକ ଅବୈଧ ସନ୍ତାନକୁ ସମାଜ ସ୍ୱୀକୃତି ଦେଇଛି। କୁମାରୀ କୁନ୍ତୀର ପୁତ୍ର କର୍ଣ୍ଣ, ନିଜର ପୌରୁଷ- ପ୍ରଦର୍ଶନ କରି ଇତିହାସ ସୃଷ୍ଟିକରି ପାରିଛନ୍ତି ।

ଜ୍ୟୋତି ଜଣେ ଉଚ୍ଚ ଶିକ୍ଷିତା, ରୁଚି ସଂପନ୍ନା, ଧର୍ମ ପରାୟଣା ଝିଅ ଥିଲା।

ତା'ର ଚରିତ୍ର ସଂପର୍କରେ କେବେ ବି କେହି ଆଙ୍ଗୁଳି ଦେଖାଇ ପାରି ନଥିଲେ । ସୂର୍ଯ୍ୟର ମୃତ୍ୟୁ ହିଁ ତା' ଜୀବନରେ ବିପର୍ଯ୍ୟୟ ଆଣି ଦେଇଛି ।

- ସେ ଜଣେ ନାରୀ । ତା'ର ମାତୃତ୍ୱ କ୍ରନ୍ଦନ କରିବା ସ୍ୱାଭାବିକ । ମୋର ବିଶ୍ୱାସ ସେ ନିଶ୍ଚୟ ଜଣେ ଗୁଣବାନ ସଚ୍ଚରିତ୍ର ପୁରୁଷ ସହିତ ମିଳିତ ହେଇ ପୁତ୍ରଟିଏ ଜନ୍ମ ଦେଇଥିବ । ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ସେ ମୋର କୁଳବୋହୂ । ତା'ର ସନ୍ତାନ ହିଁ ମୋର କୁଳ ନନ୍ଦନ । ସେ ହେଉଛି, ଆମର କୁଳ ରକ୍ଷାକାରୀ, ଆଉ ସୂର୍ଯ୍ୟର ଉତ୍ତରାଧିକାରୀ । ତାକୁ ବଞ୍ଚାଇ ରଖିବା ମୋର ସର୍ବ ପ୍ରଥମ କର୍ତ୍ତବ୍ୟ' ।

ସକାଳୁ ଉଠିପଡ଼ି ସୂର୍ଯ୍ୟର ବୋଉ ଗାଡ଼ିଟିଏ ଧରି ମଧୁପୁରରେ ପହଞ୍ଚିଲେ । ସେତେବେଳକୁ ଜ୍ୟୋତି ଘରେ କାନ୍ଦ ବୋବାଳି ପଡ଼ିଥାଏ । ସନାତନ ଗାଡ଼ି ଦେଖି ଭୟରେ ଶଂକିତ ହେଇ ପଡ଼ିଲେ । ସେ ଅନୁମାନ କରିନେଲେ, ବିପଦ ବେଳେ ଆହୁରି ଗୋଟାଏ କିଛି ନୂଆ ବିପଦ ଆସି ପହଞ୍ଚିଗଲା ନିଶ୍ଚୟ ।

ଗାଡ଼ିରୁ ବାହାରି ପଡ଼ିଲେ, ଜ୍ୟୋତିର ଶାଶୂ । ସେ ଦେଖିଲେ, ମଧୁପୁର ଗାଁ'ର କେତେଜଣ ଉତ୍ୟକ୍ତ ଯୁବକ ସନାତନଙ୍କର ଘର ଆଡ଼କୁ ଚାହିଁ କ'ଣ ସବୁ କଥାବାର୍ତ୍ତା ହେଇ ଚାଲିଛନ୍ତି । ତାଂକ ଭିତରୁ ଜ୍ୟୋତିର ଅର୍ଜୁନୀ ଦାଦା ଆଗକୁ ଚାଲି ଆସି ତାଂକୁ କହିଲେ, ' ବୁଝିଲ, ସମୁଦୁଣୀ! ଜ୍ୟୋତିର ପୁଅଟିଏ ହେଇଛି, ମାନେ ତମର ନାତି ମ ! ଠିକ୍ ସମୟରେ ଆସିଛ, ଭଲ କରିଛ । ବୋହୂ ସାଙ୍ଗରେ ନାତିକୁ ନେଇଯିବେ, ଆପଣଂକ ଗାଁ'ରେ ନାତି ଖେଳେଇବେ' ।

ଅର୍ଜୁନୀ ବାବୁଙ୍କର କଥାଗୁଡ଼ାକ ଯେମିତି କଣ୍ଟା ଫୋଡ଼ିଲା ପରି ଲାଗୁଥିଲା । ଜ୍ୟୋତିର ଶାଶୂ ବୁଝିଗଲେ, ତାଂକୁ ଅପମାନିତ କରିବା ଉଦ୍ଦେଶ୍ୟରେ ଅର୍ଜୁନୀ ବାବୁ ଏଭଳି କଥାଗୁଡ଼ାକୁ ଚିଗୁଲେଇ କହୁଛନ୍ତି । ସେତେବେଳକୁ ଗାଆଁର ଆଉ କେତେଜଣ ମାମଲକାର ଲୋକ ଆସି ତାଂକ ପାଖକୁ ଲାଗି ଠିଆ ହୋଇ ଆହୁରି କେତେ ବାଜେ କଥା କହୁଥା'ନ୍ତି ।

ଜ୍ୟୋତିର ଶାଶୂ ସମସ୍ତଙ୍କ କଥା ଶୁଣିସାରି ଚଡ଼ା ଗଳାରେ କହିଦେଲେ, 'ଅର୍ଜୁନୀ ସମୁଦି ! ତମେ ପରା ମୋତେ ଡାକିନେଇ ପାଲା ଦେଖେଇ ଥିଲ ? ମହାଭାରତ କାହାଣୀରେ ସତ୍ୟବତୀଙ୍କ କଥା ତମେ ନିଜେ ଶୁଣିଥିଲ ନା ନାହିଁ ?? ଅମ୍ବିକା ଆଉ ଅମ୍ବାଳିକାଂକୁ କିଏ ଘରୁ ବାହାର କରି ଦେଇଥିଲା, କହି ପାରିବ'?

ଗାଆଁଟା ଯାକର ଲୋକଙ୍କ ଭିତରୁ କାହାରି ତୁଣ୍ଡରୁ କଥା ବାହାରିଲା ନାହିଁ।

ଆହୁରି ଚଢ଼ା ଗଳାରେ ଜ୍ୟୋତିର ଶାଶୂ କହିଲେ, ' ମୁଁ ଜାଣେ, ସନାତନଙ୍କର ବଂଶ ବୁଡ଼ିଗଲେ, ତମରି ଭଳି ସୁବିଧାବାଦୀ ଲୋକମାନେ ତାଂକ ସଂପତ୍ତିକୁ ମାଡ଼ି ବସିବେ।

ଜ୍ୟୋତି ହେଉଛି, ମୋର ବୋହୂ। କୁଳବୋହୂ ଲକ୍ଷ୍ମୀ। ସେ ଯାହା କରିଛି, ଠିକ୍ କରିଛି। ଦୁଇଟି ଯାକ କୁଳକୁ ସେ ରକ୍ଷା କରିବା ପାଇଁ ପୁତ୍ର ସନ୍ତାନଟିଏ ଜନ୍ମ କରିଛି। ସେ ଛୁଆଟି ଆମର ବଂଶ ରକ୍ଷା କରିବ। ମୁଁ ତାକୁ ନାତି ହିସାବରେ ଗ୍ରହଣ କରିବି । ଏଥିରେ ଆପଣମାନଙ୍କର କିଛି ଆପତ୍ତି ଅଛି କି' ?

ଅର୍ଜୁନୀ ବାବୁ ମୁଣ୍ଡ ତଳକୁ କରି ସିଧା ଘରକୁ ଚାଲିଗଲେ। ଚାହୁଁ ଚାହୁଁ ଗାଆଁ ମୁଖିଆ ଆଉ ଉତ୍ତେଜିତ ଯୁବକମାନେ ଧୀରେ ଧୀରେ କିଏ କୁଆଡ଼େ ଖସିଲେ ।। ସେ ସିଧା ଘର ଭିତରକୁ ପଶିଯାଇ କହିଲେ, 'ସମୁଦୁଣୀ ! ମୋ ବୋହୂକୁ ମୁଁ ନେଇ ଯିବାକୁ ଆସିଛି। ମୋ ନାତିକୁ ମଧ୍ୟ ମୁଁ ସାଂଗରେ ନେଇଯିବି। ଯଦି ଉଚିତ୍ ମନେ କରୁଛ, ତେବେ ଜ୍ୟୋତି ସାଂଗରେ ତମେ ବି ଚାଲ। ସେଇଠି ଦି'ଜଣ ମିଶି ନାତି ସୁଖ ଭୋଗ କରିବା' ।

ସମୁଦୁଣୀଙ୍କର କଥା ଶୁଣି ସନାତନ ଅବାକ୍ ହେଇଗଲେ। ଆଗପଛ କିଛି ବିଚାର ନକରି ଘରେ ତାଲା ପକାଇ ସମୁଦୁଣୀଙ୍କ ସାଙ୍ଗରେ ସମସ୍ତେ ଯିବାକୁ ବାହାରି ପଡ଼ିଲେ ।

ଗାଁ' ଲୋକେ ଏପରି ବିଚିତ୍ର ଘଟଣା ଦେଖି ହତବାକ୍ ହେଇଗଲେ। ପଞ୍ଚାୟତର ନିଷ୍ପତ୍ତି ସଂପୂର୍ଣ୍ଣ ଅକାମୀ ହେଇ ପଡ଼ିଲା।

ଘଟିବାକୁ ଯାଇଥିବା ଦୁର୍ଘଟଣାଟାଏ ହଠାତ୍ ଶୁଭ କାର୍ଯ୍ୟରେ ପରିଣତ ହେଇଗଲା। ସୂର୍ଯ୍ୟର ଘରେ ଜ୍ୟୋତି ଜଳିଲା। ଦେବଶିଶୁର କୁଆଁ କୁଆଁ ରାବରେ ଘର ତାଙ୍କର ପୂରି ଉଠିଲା। ପୀଉସୀ ଶାଶୂ ଦୁଇ ବର୍ଷ ପରେ ନାତିକୁ କୋଳରେ ଧରି ପ୍ରଥମ ଥର ପାଇଁ ନାଚି ଉଠିଲେ।





ଶ୍ରଦ୍ଧାକରବାବୁ ଖବର ପାଇ ବିକ୍ରମପୁରରେ ପହଞ୍ଚିଲେ । ଜ୍ୟୋତିର ପୁଅ ଜନ୍ମ ହେବା କଥାଟା ତାଂକୁ ବଡ଼ ଅଡୁଆ ଲାଗିଲା । ତଥାପି ନାନୀଂକଠାରୁ ସବୁକଥା ଶୁଣିସାରି ସେ ନୀରବ ରହିବାକୁ ବାଧ୍ୟ ହେଲେ । ପୁରାଣ ଶାସ୍ତ୍ରର ପ୍ରମାଣ, ସେଦିନ ପାଲାର କାହାଣୀ ଓ ବ୍ୟାସଦେବଂକ ଦ୍ୱାରା ବଂଶରକ୍ଷା ଉପାଖ୍ୟାନ ସଂଗେ ସଂଗେ ଆଜିକାଲି ଲୁଚ଼ା ଛପାରେ ଚ଼ାଲିଥିବା ଅନେକ ସତ୍ୟ ଘଟଣା ତାଂକ ଆଖି ଆଗରେ ଝଲମଲ ହେଇ ଦେଖାଗଲା ।

ସେ ତାଂକ ଭଉଣୀ ସହିତ ଏ' ସଂପର୍କରେ ଅନେକ ସମୟ ଧରି କଥାବାର୍ତ୍ତା, ଯୁକ୍ତିତର୍କ ବି କଲେ । ଶେଷରେ ନାନୀର କଥାରେ, ସୂର୍ଯ୍ୟକାନ୍ତ ରୂପୀ ମାନସ ବାବାଂକୁ ଯେକୌଣସି ପ୍ରକାରେ ଧରି ଆଣିବାକୁ ସ୍ଥିର ହେଲା ।

ଜ୍ୟୋତି ସବୁ ସତକଥା ପ୍ରକାଶ କରି ସାରିଥିଲା । ତା'କଥାରୁ ଜଣା ପଡ଼ିଲା, ସୂର୍ଯ୍ୟକାନ୍ତର ଶବକୁ ସେ ଦେଖିନାହିଁ, କିମ୍ବା ତା'ର ସଂସ୍କାର କାର୍ଯ୍ୟରେ ଯୋଗଦାନ କରିନାହିଁ । ପୁଣି ସୂର୍ଯ୍ୟ ସହିତ ମିଳାମିଶା କରିବାର ସୁଯୋଗ ମଧ୍ୟ ପାଇ ପାରି ନଥିଲା । ତେଣୁ ସୂର୍ଯ୍ୟକୁ ଚ଼ିହ୍ନିବାରେ ତା'ର ଭ୍ରମ ହେବା ସ୍ୱାଭାବିକ । ମନ ଭିତରେ ସେ ସର୍ବଦା ସୂର୍ଯ୍ୟର ଚ଼ିତ୍ର ହିଁ ଆଂକୁଛି । ତା'ର ଅବଚ଼େତନ ମନରେ ରହି ଯାଇଛି - 'ସୂର୍ଯ୍ୟ ଏବେ ବି ଜୀବିତ ରହିଛି । ପୂର୍ବରୁ ଦେଖି ନଥିବା ମାନସ ବାବାଂକ ଚ଼େହେରା ସହିତ ନିଶ୍ଚୟ ସୂର୍ଯ୍ୟ ଚ଼େହେରାର କିଛି ସାମଞ୍ଜସ୍ୟ ରହିଛି ।

- ଅଳ୍ପ ଦେଖା, ଅଳ୍ପ କଥା ଏବଂ ଅଧିକ ଭାବନା ଫଳରେ ଜ୍ୟୋତି ତାଂକୁ ଅସଲ ସୂର୍ଯ୍ୟ ବୋଲି ମନେ କରିଛି । ଦୀର୍ଘଦିନରୁ ମନ ଭିତରେ ଥିବା ବ୍ୟାକୁଳତା ଏବଂ ଆବେଗକୁ ସେ ସମ୍ଭାଳି ରଖି ପାରିନାହିଁ । ତେଣୁ ସେ ତାଂକୁ ନିଜର ସ୍ୱାମୀ ମନେ କରି ସ୍ୱାଭାବିକ ଭାବେ ତା' ସହିତ ମିଳିତ ହେଇ ଯାଇଛି । ଏଭଳି କ୍ଷେତ୍ରରେ ମାନସ ବାବାଂକର ବା ଦୋଷ କ'ଣ ?

ଶ୍ରଦ୍ଧାକର ଗାଁ'ର କେତେଜଣ ଯୁବକଙ୍କୁ ସାଂଗରେ ଧରି ମାନସ ବାବାଂକ ସନ୍ଧାନରେ ବାହାରି ପଡ଼ିଲେ । ଢେଙ୍କାନାଳ ପାଖାପାଖି ଯେତେ ଟୁଙ୍ଗୀ ଅଛି, ସବୁଠାରେ ତାଂକୁ ଖୋଜାଗଲା । ଶେଷରେ ମାନସ ବାବାଂକୁ ମଢ଼ୀ ଟୁଙ୍ଗୀରୁ ଠାବ କରାଗଲା ।

ବାବା ଭୟରେ ସବୁ ସତ୍ୟ କଥା ଖୋଲି କହିଦେଲେ। ନିଜର କଲାକର୍ମ ପାଇଁ ନିଜେ ଦୋଷୀ ବୋଲି ସ୍ୱୀକାର କଲେ।

ଏଥିପାଇଁ ତାଂକୁ ନର୍କଗାମୀ ହେବାକୁ ପଡ଼ିବ। ସେ ଜ୍ୟୋତି ସହିତ ମିଳିତ ହେବା ଦିନରୁ ହିଁ ଗୁରୁଦ୍ରୋହୀ ହେଇ ସାରିଛନ୍ତି; ବୋଲି ଶ୍ରଦ୍ଧାକରକୁ ଜଣାଇଲେ।

ଶ୍ରଦ୍ଧାକରଂକ ନେତୃତ୍ୱରେ ଯୁବକମାନେ ମାନସ ବାବାଂକୁ ଟେକିନେଇ ଗାଡ଼ିରେ ବସାଇ ଦେଲେ। କୌପୂନୀ ପିନ୍ଧା ବାବା ଭୟ-ଆତଙ୍କରେ ଥରୁଥା'ନ୍ତି । ସୂର୍ଯ୍ୟର ମାଆଙ୍କୁ ଫୋନ୍‌ରେ ଖବର ଦିଆ ହେଇଗଲା, 'ବାବା ଧରା ପଡ଼ିଛନ୍ତି। ଆମେ ଘଣ୍ଟାଏ ଭିତରେ ତାଂକୁ ନେଇ ବିକ୍ରମପୁରରେ ପହଞ୍ଚିବୁ' ।

ସୂର୍ଯ୍ୟର ମାଆ ଶ୍ରଦ୍ଧାକରକୁ ଆଗରୁ ତାଗିଦ୍ କରି କହିଥିଲେ 'ମାନସ ବାବା ଯଦି କେବେ ଧରା ପଡ଼ି ଯାଆନ୍ତି; ତେବେ ତାଙ୍କ ଦେହରେ କେହି ଚିପ ଲଗାଇବ ନାହିଁ, କିମ୍ବା କେହି ତାଂକୁ କୁଭାଷାରେ ଗାଳି ଗୁଲଜ କରିବ ନାହିଁ। ଯାହା ଦଣ୍ଡ ଦେବାର ଅଛି, ମୁଁ ଦେବି। ଜ୍ୟୋତି ଇଛାରେ ହିଁ ତାଂକ ଉପରେ ଦଣ୍ଡ ନିର୍ଦ୍ଧାରଣ କରାଯିବ' ।

ତେଣୁ ଶ୍ରଦ୍ଧାକର ବାବାଂକୁ ନିଜ ପାଖରେ ବସାଇ ବିକ୍ରମପୁରରେ ପହଞ୍ଚିଲେ। ଗାଡ଼ିରେ ଯାଇଥିବା ଗାଁ' ଯୁବକମାନେ ଚୁପଚାପ ଭାବରେ ବସି ଭାବୁଥିଲେ, 'ବାବା ଗାଁ'ରେ ପହଞ୍ଚିଲେ। ତାଂକର ଲେଙ୍ଗୁଟି ରହିବ ନାହିଁ। ମାଡ଼ ଆଉ ଅପମାନରେ ପୋତି ହେଇ ପଡ଼ିବେ' ।

-କିନ୍ତୁ ଗାଡ଼ିରୁ ଓହ୍ଲାଇ ପଡ଼ି ସେମାନେ ଦେଖିଲେ, ସୂର୍ଯ୍ୟର ମାଆ ବାବାଂକୁ ଫୁଲ, ଚନ୍ଦନ ଲଗାଇ ଦେଇ ଘିଅ ଦୀପ ଜାଳି ବନ୍ଦାପନା ଆରମ୍ଭ କରିଦେଲେ। ଏଭଳି ବିଚିତ୍ର ଘଟଣା ଦେଖି ସମସ୍ତେ ଅବାକ୍ ହେଇଗଲେ। ଗାଁ'ର ଲୋକମାନେ ବାବାଂକୁ ଘର ଭିତରକୁ ପାଛୋଟି ନେଇଗଲେ । ଘର ଭିତରେ ଓକିଲ ବାବୁ କାଗଜ ପତ୍ର ପ୍ରସ୍ତୁତ କରି ଅପେକ୍ଷା କରିଥିଲେ।

ବାବଂକ ପାଇଁ ନୂଆବସ୍ତ୍ର ଅଣା ଯାଇଥିଲା। ଶ୍ରଦ୍ଧାକର ବାବାଂକୁ ବସ୍ତ୍ର ବଦଳାଇବାକୁ ଅନୁରୋଧ କଲେ। ଓକିଲବାବୁ ବାବାଂକୁ ପାଖକୁ ଡାକି ସୂର୍ଯ୍ୟ ବୋଉର ଉଇଲ୍ କାଗଜକୁ ପଢ଼ି ଶୁଣାଇ ଦେଲେ। ସେଥିରେ ଲେଖାଥିଲା :



କେନ୍ଦୁଝର ବାସୀ ଅଲେଖ ମହିମା ଧର୍ମାବଲମ୍ବୀ ମାନସ ବାବା ସଂପ୍ରତି ଯୋରନ୍ଦା ନିକଟସ୍ଥ ନିରାକାର ବାବାଂକ ମଠରେ ଅବସ୍ଥାନ କରନ୍ତି । ତାଂକୁ ଆମ୍ଭେ ରତ୍ନପ୍ରଭା ଦେବୀ ସ୍ୱାମୀ : ଜଗଦାନନ୍ଦ ରାୟ ଗ୍ରାମ : ବିକ୍ରମପୁର ଥାନା : ଗଁଦିଆ, ଜିଲ୍ଲା : ଢେଙ୍କାନାଳ । ଅଦ୍ୟ ତା: ୧୭.୧୦.୨୦୦୪ରିଖ ଦିନ ପୋଷ୍ୟପୁତ୍ର ଭାବେ ଗ୍ରହଣ କଲୁ । ମୋର ପୁତ୍ର ସୂର୍ଯ୍ୟକାନ୍ତ ଅଗ୍ନିକାଣ୍ଡରେ ମୃତ୍ୟୁ ବରଣ କରିଥିବାରୁ ସମସ୍ତ ସ୍ଥାବର ଓ ଅସ୍ଥାବର ସଂପତ୍ତିର ମାନସ ବାବା ହିଁ ଉତ୍ତରାଧିକାରୀ ହେବେ । ମୃତ ସୂର୍ଯ୍ୟକାନ୍ତର ପତ୍ନୀ ଜ୍ୟୋତି ମଂଜରୀକୁ ସେ ପୁନଃ ବିବାହ କରିଛନ୍ତି । ତେଣୁ ଜ୍ୟୋତିଠାରୁ ଜନ୍ମଲାଭ କରିଥିବା ପୁତ୍ର ଓ କନ୍ୟାମାନେ ମଧ୍ୟ ପରବର୍ତ୍ତୀ କାଳରେ ଏହି ସମସ୍ତ ସଂପତ୍ତିର ଅଧିକାରୀ ହେଇ ପାରିବେ । ଆବଶ୍ୟକ ସ୍ଥଳେ ସେମାନେ ଏହି ସଂପତ୍ତିକୁ ବିକ୍ରି କରି ପାରିବେ । ଦାନ ବି କରି ପାରିବେ । ମାନସ ବାବା ଆଜିଠାରୁ ମାନସ ରଂଜନ ରାୟ ନାମରେ ପରିଚିତ ହେବେ ।

*(ଇତି) ସ୍ୱାକ୍ଷର : ରତ୍ନପ୍ରଭା ଦେବୀ*

ସାକ୍ଷୀ ଭାବରେ ଉଇଲ୍ ତଳେ ଗ୍ରାମର ସରପଞ୍ଚ, ଶ୍ରଦ୍ଧାକର ବାବୁ ଓ ଆଉ ଚାରି ପାଞ୍ଚଜଣ ମୁଖିଆ ବୟସ୍କ ଲୋକ ସ୍ୱାକ୍ଷର କରିଥିଲେ।

ରତ୍ନପ୍ରଭା ଦେବୀଙ୍କ ଉଇଲ୍ ପତ୍ର ପାଠ କରି ସାରି ମାନସ ବାବା କହିଲେ, 'ଓକିଲ ବାବୁ ! ଜ୍ୟୋତି ଗର୍ଭରୁ ମୋର ସନ୍ତାନ ଜନ୍ମ ଲାଭ କରିଛି ଏ'କଥା ସତ୍ୟ । ରତ୍ନପ୍ରଭା ଦେବୀଙ୍କର ପୋଷ୍ୟ ପୁତ୍ର ଭାବେ ନିଜକୁ ମୁଁ ତାଙ୍କ ନିକଟରେ ସମର୍ପଣ କରୁଛି। ଏଥିପାଇଁ ଦଶଦିଗ ପାଳ ସାକ୍ଷୀ ରହିଲେ। କିନ୍ତୁ ବାବା! ମୁଁ ତ ସନ୍ନ୍ୟାସ ବ୍ରତ ଗ୍ରହଣ କରି ସାରିଛି। ଘର ସଂସାର କରି ବନ୍ଧନ ଯୁକ୍ତ ହେବା ମୋ ପକ୍ଷେ ଆଉ ସମ୍ଭବପର ନୁହେଁ।

ଜ୍ୟୋତି ମୋର ପତ୍ନୀ, ନବଜାତକ ମୋର ପୁତ୍ର ହେଇ ଚିରଦିନ ପାଇଁ ରହିବେ। ଏଥିରେ କୌଣସି ସନ୍ଦେହ ନାହିଁ।

- ମୋ ତରଫରୁ ଆଉ ଗୋଟିଏ ଉଇଲ ପ୍ରସ୍ତୁତ କରି ଦିଅନ୍ତୁ - ମୁଁ ସେଥିରେ

ସ୍ୱାକ୍ଷର କରିବି । ସେଥିରେ ଲେଖାଥିବ :-

- ମୁଁ ମାନସ ରଂଜନ ରାୟ, ମାନସ ବାବା ନାମରେ ପରିଚିତ । ଇଛାପତ୍ରରେ ଜଣାଇବାକୁ ଚାହେଁ, ମୋର ସମସ୍ତ ସ୍ଥାବର - ଅସ୍ଥାବର ସଂପତ୍ତିକୁ ମୋର ପତ୍ନୀ ଜ୍ୟୋତି ଓ ଶିଶୁପୁତ୍ରଂକ ହସ୍ତରେ ଅର୍ପଣ କରି ସନ୍ନ୍ୟାସ ବ୍ରତ ଗ୍ରହଣ କରି ଚାଲି ଯାଉଛି । ଏ'ସମସ୍ତ ସଂପତ୍ତିରେ ମୋର କୌଣସି ଅଧିକାର ନାହିଁ' ।

- ମାନସ ବାବାଂକ କଥାଶୁଣି ଗ୍ରାମବାସୀମାନେ ପ୍ରତିବାଦ କଲେ । ଓକିଲଂକ ପରାମର୍ଶ କ୍ରମେ ମାନସ ବାବା ପୁତ୍ରର ଏକୋଇଶିଆ ପୂଜା ପର୍ଯ୍ୟନ୍ତ ଘରେ ରହିବାକୁ ରାଜି ହେଲେ ।

- ଏହି ସମୟ ମଧ୍ୟରେ ନିରାକାର ବାବା ମଧୁବାବାଂକ ସହିତ ତାଂକ ମଠକୁ ଫେରି ମାନସ ବାବାଂକ ସଂପର୍କରେ ନିନ୍ଦା କଥା ଶୁଣି ମୁଣ୍ଡରେ ହାତଦେଲେ । ସେଠାରେ ସୂର୍ଯ୍ୟକାନ୍ତର ବୋଉ, ପିଉସୀ ଓ ମାମୁଙ୍କଠାରୁ ସବୁକଥା ବୁଝିଲେ । ଜ୍ୟୋତି ସହିତ ଭେଟ ହେଇ ତା'ଠାରୁ ସବୁ ସତ୍ୟକଥା ଶୁଣିଲେ । ମାନସ ବାବା କ୍ଷମା ପ୍ରାର୍ଥନା କରି ସମସ୍ତଙ୍କ ଆଗରେ ସତ୍ୟ ପ୍ରକାଶ କଲେ ।

ଗ୍ରାମବାସୀଂକ ଉପସ୍ଥିତିରେ ନିରାକାର ବାବା ଜ୍ୟୋତିର ଶାଶୂଂକୁ କହିଲେ, 'ମା ରତ୍ନପ୍ରଭା ! ଜ୍ୟୋତି କୋଳରେ ଯେଉଁ ସନ୍ତାନ ଜନ୍ମଲାଭ କରିଛି, ସିଏ ହିଁ ପ୍ରକୃତରେ ଦେବଶିଶୁ । ତା'ର ନାମ ରଖାଯାଉ, ଦେବଦତ୍ତ । ଧର୍ମ ଭିତରେ ପ୍ରବେଶ କରି ନାରୀ ସଂସର୍ଗ କରିବା ଆମର ଧର୍ମ ବିରୋଧୀ । ତେଣୁ ମାନସକୁ ଆଉ ଆମେ କୌଣସି ଟୁଙ୍ଗିରେ ପୂରାଇ ଦେବୁନାହିଁ । ଏକଥା ତ ସତ; କିନ୍ତୁ ଜଣେ ସିଦ୍ଧ ପୁରୁଷଠାରୁ ଏହି ଦେବଶିଶୁ ଜନ୍ମଲାଭ କରିବାକୁ ହିଁ ଅପେକ୍ଷା କରି ରହିଥିଲା । ଏ'ସବୁ ପ୍ରଭୁଂକର ମାୟା, ମହିମା ଅଲେଖଂକ କରୁଣା ।

- ଜ୍ୟୋତିର ବିବାହ ବେଳେ ମୁଁ କୋଷ୍ଠି ଦେଖି ଏଭଳି ଦୁର୍ଘଟଣା ହେବାର ସୂଚନା ପାଇଥିଲି । ତେବେ ଏହାକୁ ଏଡ଼ାଇବାକୁ କାହାରି ଶକ୍ତି ସାମର୍ଥ୍ୟ ନାହିଁ । ଏ କଥା ବି ମୁଁ ଜାଣିଥିଲି ।

ଆଜି ଜ୍ୟୋତିର ଧର୍ମବଳ, ରତ୍ନପ୍ରଭା ଦେବୀଙ୍କର ପୁଣ୍ୟବଳ ଏବଂ ପ୍ରଭୁ ମହିମା ଗୋସାଇଁଙ୍କର ଆଶୀର୍ବାଦରୁ ତୁମ ଜୀବନ ଆକାଶରୁ କଳା ବାଦଲ ହଟି ଯାଇଛି । ଜ୍ୟୋତିର ଶିଖାରେ ଏ'ସମଗ୍ର ଅଂଚଳ ଆଲୋକିତ ହେଇ ଯାଇଛି ।

ସୂର୍ଯ୍ୟକୁ ହରାଇ ଆପଣ ଆଜି ମାନସ ପୁତ୍ରକୁ ପାଇଛନ୍ତି । ମାନସ ବାବାଂକ ମନରେ ଥିବା ଭୟ-ଆଂଶକା ବି ଦୂର ହେଇ ପାରିଛି । ନବଜାତକ ଆଉ ଅବୈଧ ସନ୍ତାନ

ଭାବେ ପରିଚିତ ନହୋଇ ଆପଣଂକର କୁଳ ନନ୍ଦନ ଏବଂ ଦେବଦତ୍ତ ଭାବେ ପରିଚିତ ହୋଇଛି । ଏହାଠାରୁ ଆଉ ସୁଖର କଥା କ'ଣ ଥାଇପାରେ ?

ଜ୍ୟୋତି ଘରକୋଣ ଝରକା ପାଖରେ ଠିଆହୋଇ ସବୁ କଥା ଶୁଣୁଥିଲା । ତା' ଆଖିରୁ ଲୁହ ଧାର ଧାର ହୋଇ ବହିଯାଉଥିଲା । ନିରାକାର ବାବାଂକ ଇସାରା ପାଇ ସେ ମାନସ ପାଖକୁ ଆସି ତାଙ୍କ ପାଦ ତଳେ ସାଷ୍ଟାଂଗ ପ୍ରଣାମ କଲା ।

ନିରାକାର ବାବା ମାନସ ଓ ଜ୍ୟୋତିଙ୍କୁ ଆଶୀର୍ବାଦ ଦେଇ କହିଲେ, ବାବା ମାନସ ! ଯାହା ସବୁ ଘଟଣା ଘଟିଥିଲା, ସେ ସବୁ ପ୍ରଭୁ ମହିମା ଗୋସାଇଁଙ୍କ ଇଚ୍ଛାରେ ହିଁ ଘଟିଛି । ତୁମେ ବର୍ତ୍ତମାନ ଗୃହସ୍ଥ ଜୀବନ ଯାପନ କରି କିଛି ବର୍ଷ ବିକ୍ରମପୁରରେ ରହିଯାଅ । ଶାସ୍ତ୍ର କହିଛି, "ପତ୍ନୀ ନିବେଶି ପୁତ୍ର ପାଶେ, ଅଥବା ଚଳିବ ସନ୍ନ୍ୟାସେ" । ଶାସ୍ତ୍ରବାଣୀକୁ ସମ୍ମାନ ଦେଇ ତୁମେ ଠିକ୍ ସମୟରେ ସନ୍ନ୍ୟାସ ବ୍ରତ ଆଉ ଥରେ ଗ୍ରହଣ କରିବ । ବର୍ତ୍ତମାନ ଦୁଇ କୁଳ ରକ୍ଷାକାରୀ ଦେବଦତ୍ତକୁ ମଣିଷ କରି ଗଢ଼ି ତୋଳିବା ଦାୟିତ୍ୱ ତୁମକୁ ହିଁ ନେବାକୁ ପଡ଼ିବ । ଦେବଦତ୍ତ ଯୋଗ୍ୟ ହେବାପରେ ହିଁ ମୁଁ ତୁମକୁ ଡାକି ପୁଣିଥରେ ସନ୍ନ୍ୟାସ ବ୍ରତରେ ବ୍ରତୀ କରାଇବି । ବର୍ତ୍ତମାନ ପାଇଁ ତୁମକୁ କୌଣସି ମଠରେ ସ୍ଥାନ ମିଳିବ ନାହିଁ ।

ଦୁଇହାତ ଯୋଡ଼ି ଅପରାଧୀ ପରି ଛିଡ଼ା ହୋଇଥିବା ମାନସ, ନିରାକାର ବାବାଂକ ଆଦେଶକୁ ଦେବବାକ୍ୟ ପରି ମାନିନେଲେ ।

ମଧୁବାବା କହିଲେ, ମା' ଜ୍ୟୋତି ! ଶାଶୂଙ୍କୁ କହି ଆଉ ଦିନେ ଗୋଟାଏ ଧର୍ମ ସଭାର ବ୍ୟବସ୍ଥା କରିବୁ । ଗାଦିରୁ ସବୁ ବାବା ଆସି ତମକୁ ଆଉଥରେ ଆଶୀର୍ବାଦ ପାଇଁ ଗୁରୁ ମହିମା ଗୋସାଇଁଙ୍କୁ ଡାକିବୁ ।

ଶ୍ରଦ୍ଧାକର ବାବୁ କହିଲେ, ବାବା ! ଆଜି ସମସ୍ତଙ୍କ ପାଇଁ ଏଇଠି ଭିକ୍ଷାର ବ୍ୟବସ୍ଥା କରାଯାଇଛି । ଆମ ସାଙ୍ଗରେ ଅନ୍ନଭିକ୍ଷା ସାରି ଆପଣମାନେ ଗାଦିକୁ ଫେରିବେ ।

କ୍ୱାଇଁ ମାନସ ରଞ୍ଜନ ବି ଆପଣଂକ ସାଂଗରେ ଭିକ୍ଷା କରିବେ, ଆସନ୍ତୁ ।

ଶ୍ରଦ୍ଧାକର ବାବୁ ଭିକ୍ଷା ସ୍ଥାନକୁ ବାବାମାନଙ୍କୁ ପାଛୋଟି ନେଲେ ।



୧୨/୧୦/୨୦୦୪, ଯୋରନ୍ଦା - ଢେଙ୍କାନାଳ